# ଜୀବନ ଓ ହନ୍ତୁ ବତଉ ଅଚ୍ଛନ୍ତୁ

## ଭାଷା'ର ଉତ୍ପତ୍ତି

ଲିଖିତ ଭାଷା'ର ବିକାଶ'ର ହଜାର ହଜାର ବର୍ଷ ପୂର୍ବେ ଆଦିମ ମାନବ ନିଜର ଧାରଣାକୁ ଗୁମ୍ଫା କାନ୍ଥରେ ଚିତ୍ରରେଖନ ଦ୍ୱାରା ପ୍ରକାଶ କରୁଥିଲା । ଫ୍ରାନ୍ସ'ର ଲାସ୍କୋ (Lascaux) ରେ ଏଭଳି କଳାକୃତି ଅଛି ।



This represents 'warriors'.

ପ୍ରାଚୀନ ଇଜିପ୍ଟବାସୀମାନେ (ଖ୍ରୀ. ପୂ. ପ୍ରାୟ ୩୦୦୦ ବର୍ଷ ଠାରୁ) ବହୁଳ ବସ୍ତୁ ଓ ଚିନ୍ତନାକୁ ରୂପ ଦେବା ପାଇଁ ଏକ ଚିହ୍ନ-ସୂତ୍ର ପ୍ରଣିତ କରିଥିଲେ, ଯାହାକୁ ହାଇରୋଗ୍ଲିଫିକ୍ କୁହାଯାଏ ।




ଏହି ଚିତ୍ରସବୁ ପ୍ରତ୍ୟେକ ଗୋଟିଏ ବୋଲିକ ଶବ୍ଦ'ର ପ୍ରତିନିଧିତ୍ୱ କରେ । କାଳାନ୍ତରରେ, ଏହି ଚିତ୍ରସବୁ ମୂଳ ଶବ୍ଦ'ର ଅର୍ଥବୋଧ ପରିବର୍ତ୍ତେ କେବଳ ଅନୁନାଦିକ ଧ୍ୱନି ରୂପେ ପରିଗଣିତ ହେଲେ ।




ଏହି ପ୍ରଣାଳୀ ଆଜି ମଧ୍ୟ ରେବସ୍ (REBUS) ନାମକ ଖେଳରେ ବ୍ୟବହାର ହେଉଛି । ଚିତ୍ର ଦ୍ୱାରା ଶବ୍ଦ ଜଣାପଡ଼େ — ଯେପରିକି ନିମ୍ନୋକ୍ତ ରେବସ୍‌ରେ saw, rope ଆଦି ଚିତ୍ରଙ୍କ ସମଷ୍ଟିରେ ପ୍ରସ୍ତୁତ ବାକ୍ୟ ହେଉଛି :
SOMEONE SAW MANY PEOPLE RACE BY.







ଚୀନାବାସୀଙ୍କ ଲେଖନଶୈଳୀ (ପିକ୍ଟୋଗ୍ରାମ୍) ମଧ୍ୟ ଏଭଳି ବିକଶିତ ହେଲା । ଶୁରୁରେ ଅର୍ଥ ଚିହ୍ନ ଚିତ୍ରସବୁ ପ୍ରକୃତରେ ବସ୍ତୁ ଓ ଚିନ୍ତାଧାରାର ସରଳ ରୂପାୟନ ଥିଲା ।






ଠିକ୍ ଇଜିପ୍ଟବାସୀଙ୍କ ଭଳି, ଏସବୁ ଚିତ୍ରମାନ କାଳାନ୍ତରରେ ମାତ୍ର ଶବ୍ଦ ରୂପେ ପ୍ରଚଳିତ ହେଲେ । ଏହି ଭଣ୍ଡ-ଚିହ୍ନ, ମୂଳତଃ ପାତ୍ର (pot) ବୁଝାଉଥିବା, ଯାହ 'ଲି' ରୂପେ ଉଚ୍ଚାରିତ ହେଉଥିଲା । ସାମାନ୍ୟ ଦେଖନ୍ତୁ ତ ! ଭାଷା'ର ବିକାଶ ସହିତ, ଅର୍ଥ ପରିବର୍ତ୍ତେ ଏହି ଚିହ୍ନ 'ଲି' (Li) ଧ୍ୱନି ରୂପେ ପରିଚିତ ହେଲା ।

ବର୍ତ୍ତମାନ ଅଧିକାଂଶ ଭାଷା'ର ଲିପି ଅଛି, ଯେଉଁଥିରେ ପ୍ରତ୍ୟେକଟି ଚିହ୍ନ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଉଚ୍ଚାରଣ-ଧ୍ୱନି ବୁଝାଏ । ଆଦ୍ୟ ଭାଷାଗୁଡ଼ିକ ଲିପିକୁ ଛାଡ଼ି କୁହାଯାଉଥିଲା । ଏବେ ମଧ୍ୟ ଚିତ୍ର-ଲିପି ବ୍ୟବହାର କରାଯାଉଛି ! ଆମର ଟ୍ରାଫିକ୍-ଚିହ୍ନମାନଙ୍କୁ ଦେଖିଲେ ଏକଥା ଆପଣ ସହଜରେ ବୁଝିପାରିବେ ।

ଆପଣଙ୍କ ଭବିଷ୍ୟତ ସୁରକ୍ଷା ସକାଶେ ଜୀବନ ବୀମା ହିଁ ସବୁଠାରୁ ସୁରକ୍ଷିତ ସୁନିଶ୍ଚିତ ଉପାୟ । ଏ ସମ୍ପର୍କରେ ଅଧିକ ଜାଣନ୍ତୁ ।








ଲାଇଫ ଇନସିଓରେନ୍ସ କର୍ପୋରେଶନ ଅଫ ଇଣ୍ଡିଆ



1983 WORLD COMMUNICATIONS YEAR

daCunha/LIC/141/83 OR

# କାଶକୁ ଶୁଏଇଦିଏ ଗ୍ଲାଇକୋଡିନ






- ଆପଣଙ୍କ ମସ୍ତିଷ୍କ'ର କାଶ-କେନ୍ଦ୍ରକୁ ନିୟନ୍ତ୍ରଣ କରେ ।
- ଆପଣଙ୍କ ଗଳା ଗଡଗଡ ହେବାଠାରୁ ଆରାମ ଆଣେ ।
- ଆପଣଙ୍କ ଛାତି'ର ମାଦା ସ୍ନାୟୁଙ୍କୁ ଆରାମ ଆଣେ ।
- ଆପଣଙ୍କ ଫୁସଫୁସରେ ଜମିଥିବା ଶ୍ଳେଷ୍ମା ଦୂର କରେ ।

**ଗ୍ଲାଇକୋଡିନ-**
**୪ ପ୍ରକାରେ କାର୍ଯ୍ୟକାରୀ**
**ନିର୍ଭରଯୋଗ୍ୟ**
**କାଶ-ଉପଶମକାରୀ ।**

## ଶଯ୍ୟା ତ୍ୟାଗନ୍ତୁ, ଏଇ ନୂତନ ଆରାମ ନେଇ ।

everest/83/ACW/307-or

# ଜହ୍ନମାମୁଁ
## ଆମ ସଂସ୍କୃତି ଜାଣ
## ପ୍ରତିଯୋଗିତା

ଲକ୍ଷାଧିକ ଉତ୍ତର ମିଳିଥିବା ଦୃଷ୍ଟିରୁ ସେମାନଙ୍କର ସମସ୍ତ ଉଦ୍ୟମ ସତ୍ତ୍ୱେ ଆମ ବିଚାରକମଣ୍ଡଳୀ ଅଦ୍ୟାବଧି ମନୋନୟନ କାର୍ଯ୍ୟ ଶେଷ କରିପାରି ନାହାନ୍ତି । ଅନେକ ଉତ୍ତର ଏତେ ଭଲ ହୋଇଛି ଯେ ମନୋନୟନ କାର୍ଯ୍ୟ ଯେତିକି ପୁଲକପ୍ରଦ, ସେତିକି କାଠିକର ହେଉଛି ।

ଏହି ସଂଖ୍ୟାରେ ଫଳ ଘୋଷଣା କରିବା ଥିଲା ଆମର ଉଦ୍ଦେଶ୍ୟ । କିନ୍ତୁ ଆମର ସମସ୍ତ ଉଦ୍ୟମ ସତ୍ତ୍ୱେ ତାହା ସମ୍ଭବ ହେଲା ନାହିଁ । ଅନୁରୋଧ, ପାଠକମାନେ ଆଉ ମାସଟିଏ ସମୟ ଦେବେ । ଆଗାମୀ ସଂଖ୍ୟାରେ ଫଳ ପ୍ରକାଶ ନିଶ୍ଚିତ ।

ଧନ୍ୟବାଦ ।



# ଅମିତ ଗଣିତରେ ଖୁବ ଭଲ...
# ଆଉ ଠିକ ସେମିତି ତାର କ୍ୟାମେଲ ଜ୍ୟାମିତି ବାକ୍ସ

camel
SCHOLAR 1029
MATHEMATICAL
DRAWING
INSTRUMENTS

## ଗତ ଦୁଇ ବର୍ଷ ହେଲା ସେମାନଙ୍କ ମଧ୍ୟରେ ନିବିଡ଼ ସଂପର୍କ ରହିଆସିଛି।

କ୍ୟାମେଲ ଜ୍ୟାମିତି ସେଟ ସର୍ବସ୍ଥାୟୀ ହୋଇ ରହିବା ପାଇଁ ତିଆରି କରାଯାଇଛି। ତାହା ଖୁବ ମଜବୁତ ଓ ଲମ୍ବାଦିନର ଟାଣଓଟର ସହ୍ୟ କରିବା ପାଇଁ ସକ୍ଷମ।

ଅନ୍ୟମଧ୍ୟ ତାହା ନିର୍ଭୁଲଭାବେ ସଠିକ। ସେଥିପାଇଁ ଆପଣଙ୍କ ପିଲା ଯେଉଁ କଥାଟି ଶିଖେ ତା ହେଉଛି ସୂକ୍ଷ୍ମ ପରିମାପ। ଗଣିତରେ ସଫଳତାର ମହତ୍ତ୍ୱପୂର୍ଣ୍ଣ ରହସ୍ୟ।

ଏ ସବୁ ପାଇଁ କିଛି ବେଶୀ ଖର୍ଚ୍ଚ କରିବାକୁ ପଡ଼ିଥାଏ। ତେବେ, ମୋଟରେ ଦେଖିଲେ ଆଉ ବଦଳାଇବାକୁ ହେଲେ କିଛି ବେଶୀ ଖର୍ଚ୍ଚ କରିବାକୁ ପଡ଼େ।

କ୍ୟାମେଲରେ ଯେଉଁ ଟଙ୍କା ଖର୍ଚ୍ଚହେବ ତାହା ଆପଣଙ୍କ ପାଇଁ ସର୍ବଦା ନିଶ୍ଚିତ ଲାଭଦାୟକ ହେବ। ଅଳ୍ପ ମଧ୍ୟ ଏଥିରେ ସର୍ବ ସମସ୍ତ ପାଇଁ ଟଙ୍କା ବଞ୍ଚିବ।

**କ୍ୟାମେଲ** ଜ୍ୟାମିତି ବାକ୍ସ



କ୍ୟାମଲିନ ପ୍ରା. ଲି.
ଆର୍ଟ ମ୍ୟାଟେରିଆଲ ଡିଭିଜନ,
ବମ୍ବେ-୪୦୦ ୦୫୯ (ଭାରତ)

VISION/ORI/811

ମୋ ଟିକି ଭାଲୁଟି ଅଛି ଆଦରର ନାମଟି ତାର ଟେଡ଼ି
କଅଁଳେଇ ଟିକେ ଡାକିଦେଲେ ତାକୁ ଆନନ୍ଦରେ ଯାଏ ଗଡ଼ି
ମୋପାଖେ ସଦା ସେ ନସରପସର ମୋର ଅଛି ଅଳିଅଳ
ଗେହ୍ଲା କରିଦେଲେ ଖୁସିରେ ଦିଏସେ ଜେମ୍ସ ମିଠେଇ ମାଳ

**ଜେମ୍ସ ସବୁରି ପ୍ରିୟ-**
**ତା ପାଇଁ ଅଛି ସମୟ ହିଁ ସମୟ !**



# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣି'

ସଞ୍ଚାଳକ : ନାଗି ରେଡ୍ଡୀ

"ଜହ୍ନମାମୁଁ" ଓଡ଼ିଶାର ପୁରପଲ୍ଲି ସହର ନଗର ବ୍ୟାପି ତା'ର ଅଗଣିତ ପାଠକ ପାଠିକାଙ୍କୁ ଶୁଭ-ଶାରଦୀୟ ଅଭିବାଦନ ଜଣାଉଛି । ଦିବ୍ୟଜନନୀଙ୍କ ଆଶୀଷରେ ସମସ୍ତଙ୍କର ଜୀବନ ହେଉ ଶାନ୍ତିପୂର୍ଣ୍ଣ ଓ ସମୃଦ୍ଧ ।

## ଅମରବାଣୀ

ବଜ୍ରାଦପି କଠୋରାଣି ମୃଦୂନି କୁସୁମାଦପି ।
ଲୋକୋତ୍ତରାଣାଂ ଚେତାଂସି କୋ ହି ବିଜ୍ଞାତୁମର୍ହତି ॥

[ଯିଏ ଅସାଧାରଣ, ତା'ର ମନ କେତେବେଳେ ବଜ୍ରଠାରୁ ବଳି କଠୋର ତ କେତେବେଳେ ପୁଷ୍ପଠାରୁ ବଳି କୋମଳ ହୋଇପାରେ । ସେ ମନରେ ରହସ୍ୟ ସାଧାରଣ ମଣିଷ କାହୁଁ ବୁଝିବ ?]

ବର୍ଷ : ୧୬ ଅକ୍ଟୋବର ୧୯୮୩ ଅଙ୍କ : ୪

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



## ଜହ୍ନମାମୁଁ ସମ୍ବାଦ



### ଇଂରାଜୀ-ଶିକ୍ଷାପ୍ରାପ୍ତ ମତ୍ସ୍ୟ !

ବେଙ୍କ୍ଲୋନ ନଗରୀର ନ୍ୟୁ ଇଂଲଣ୍ଡ୍ ମତ୍ସ୍ୟାଗାର ପୃଥିବୀର ଏକମାତ୍ର ଇଂରାଜୀ କୁହା ମତ୍ସ୍ୟର ନିବାସ । ସେ ଗୋଟିକ ଜାତିରେ ସିଲ୍, ଏବଂ ତା' ନାମ ହେଲା ହୁଭର୍ । ଦଶବର୍ଷ ବୟସ୍କ ସେ ମାଛ "ହାଇ ହୋ, ଏଆଡ଼େ ଆସ !" "କିପରି ଅଛ ?" ଭଳି ଯୋଡ଼ିଏ ତିନୋଟି ବାକ୍ୟ କହିପାରେ । ପୁଣି କ୍ଳାନ୍ତ ହୋଇଗଲେ ସେ କହେ "ଏଠୁ ଭଗ !" କେତେଜଣ ସ୍ଥାନୀୟ ଲୋକଙ୍କ କଥାବାର୍ତ୍ତାରୁ ସେ ଏତକ ଶିଖିଛି ।

### ମଣିଷର ବନ୍ଧୁ ମର୍କଟ

ଚୀନ୍‌ର ୟୁନାନ୍ ଠାରେ ମାଙ୍କଡ଼ଟିଏ ବଜାର ଭିତରକୁ ଆସି ଅନବରତ ଚିତ୍କାର କରି ଲୋକଙ୍କର ଦୃଷ୍ଟି ଆକର୍ଷଣ କଲା । ଲୋକେ ଯାଇ ଦେଖିଲେ, ଗୋଟିଏ ନିର୍ଜନ ସ୍ଥାନରେ ଜଣକୁ ହତ୍ୟା କରିଯାଇଛି । ମାଙ୍କଡ଼ ସମବେତ ଲୋକଙ୍କ ଭିତରୁ ଦୁଇଜଣଙ୍କ ଉପରକୁ ଲମ୍ଫ ଦେଲା । ସେହି ଦୁଇଜଣହିଁ ହତ୍ୟାକାରୀ । ମାଙ୍କଡ଼ଟି ନିହତ ଲୋକର ପାଳିତ ।



### ଦୂର ନକ୍ଷତ୍ରର ବାର୍ତ୍ତା ?



ସ୍ପେନ୍‌ର ଲଗ୍ରୋନୋର ଦାଉଏର୍ ନାମକ ଜଣେ ରାତି ଅଧରେ ଦେଖିଲା, ଗୋଟିଏ ଉଜ୍ଜ୍ୱଳ ଜ୍ୟୋତି ତା' କୋଠରୀ ଭିତରକୁ ପଶି ଆସିଲା । ସଙ୍ଗେ ସଙ୍ଗେ ଗୋଟିଏ ଅଶ୍ରୁତପୂର୍ବ ଶବ୍ଦ ହେଲା ତା' ରେଡ଼ିଓରୁ । ସେ ସଙ୍ଗେ ସଙ୍ଗେ ଟେପ ରେକର୍ଡର ଚଳାଇଦେଲା । ବୈଜ୍ଞାନିକମାନେ ପରୀକ୍ଷା କରି କହୁଛନ୍ତି ତାହା କେହି କୃତ୍ରିମ ଭାବରେ ସୃଷ୍ଟି କରିଥିବା ସମ୍ଭବ ନୁହେଁ । ତେବେ ସେ ଜ୍ୟୋତି ଓ ଶବ୍ଦ କ'ଣ କୌଣସି ଭିନ୍ନ ଗ୍ରହରୁ ପ୍ରେରିତ ସମ୍ବାଦ ବା ସଙ୍କେତ ?

## ଜାଣନ୍ତି କି ?

୧. କେଉଁ ସହରକୁ 'କୋଠାର ନଗର' ବୋଲି କୁହାଯାଉଥିଲା ?

୨. 'ସାତ ପର୍ବତର ନଗରୀ' କେଉଁଠି ? ଏ ନାମ କିପରି ସୃଷ୍ଟି ହେଲା ?

୩. 'ସ୍ୱର୍ଣ୍ଣଦ୍ୱାର ନଗରୀ' ଭାବରେ କେଉଁ ସହର ବିଖ୍ୟାତ ?

୪. 'ତିନି ରାଜାଙ୍କ ନଗରୀ' କାହାର ନାମ?

୫. 'ସାଧୁଙ୍କ ନଗରୀ' କାହାର ନାମ ?

୬. 'ଶତେକ ଶିଖରର ନଗରୀ' କିଏ ?

(ଉତ୍ତର ପୃଷ୍ଠା ୬୪ ରୁ ପାଇବେ)



# ଦଶବର୍ଷର ରୋଗ

ସୁଦାମପୁର ଗ୍ରାମରେ ଗୋଟିଏମାତ୍ର ଦୋକାନ ଥିଲା । ଗ୍ରାମବାସୀଙ୍କର ଆବଶ୍ୟକୀୟ ସବୁ ସେଠି ଜିଣା ଅଧିକେ ମିଳୁଥାଏ । ତେବେ ଗୋଟାଏ ବି ଜିନିଷ ଭଲ ନୁହେଁ—ସବୁଥିରେ କିଛି ନା କିଛି ଭେଜାଲ୍ ମିଶିଥାଏ ।

ସେତିକି ନୁହେଁ, ଦୋକାନୀ ଦୁଃଶାସନ ପୁଣି ଭୀଷଣ ବଦ୍‌ରାଗୀ । ଗରାଖମାନଙ୍କ ପ୍ରତି ଅତ୍ୟନ୍ତ ଦୁର୍ବ୍ୟବହାର କରେ । ତେବେ ଲୋକେ ସହିଯା'ନ୍ତି । କାରଣ ଗାଁରେ ଆଉ ଦ୍ୱିତୀୟ ଦୋକାନ ନଥାଏ ।

ଦିନେ ଜଣେ ଅପରିଚିତ ଲୋକ ଆସି ଦୁଃଶାସନର ଦୋକାନରୁ ଦୁଇତିନି ପ୍ରକାର ଜିନିଷ କିଣିଲେ । ପ୍ରତ୍ୟେକ ଜିନିଷ ପରୀକ୍ଷା କରି ସେ କହିଲେ, "ହଇହେ ବାବୁ, ତମ ଦୋକାନ୍‌ରେ କ'ଣ ଶୁଦ୍ଧ ଜିନିଷ ମିଳିବା ମନା ?"

"କ'ଣ, କ'ଣ କହିଲ ? ଶୁଦ୍ଧ ଜିନିଷ ? ତମେ ତମ ଚେହେରା ଦର୍ପଣରେ ଦେଖିଛ ? ଯେଉଁ ଅପୂର୍ବ ମୁହଁଟି, ଯେଉଁ ଗନ୍ଧିଆ ଲୁଗାପଟା ପିନ୍ଧିଛ, ସେଥିରେ ପୁଣି ଶୁଦ୍ଧ ଚିଜ ପାଇଁ ସଉକ୍ ? ମୋ ଦୋକାନର ଜିନିଷକୁ ତମେ ଛୁଇଁବାରୁ ତାହା ଅଶୁଦ୍ଧ ହେଲା ।"

ଏତିକି କହିସାରି ଦୁଃଶାସନ ଆହୁରି ପାଦେ ଆଗକୁ ମାଡ଼ି ଆସିଲା ଓ 'ତୁମେ'ରୁ 'ତୁକୁ' ଆସି ଚିତ୍କାର କରି କହିଲା, "ହଇରେ ଓଲୁ, ତୋ ଚଉଦ ପୁରୁଷରେ କେବେ ଶୁଦ୍ଧ ଚିଜ ଦେଖିଥିଲୁ ? ତୋ କପାଳ ଭଲ ମୋ ଜୁଆଇଁ ଏଠି ନାହିଁ । ଥିଲେ ତୋ ହାଡ଼ମାଂସ ଏକାକାର କରି ଦେଇଥାନ୍ତା !"

"ଆଚ୍ଛା, ଆଚ୍ଛା, ଟିକିଏ ଥୟ ଧର !" ଏହା କହି ସେ ଯାଇ ସିଧା ଗ୍ରାମମୁଖ୍ୟଙ୍କ ଘରେ ପହଞ୍ଚିଲେ । "ଚିହ୍ନି ପାରୁଛ ?" ସେ ମୁଖ୍ୟଙ୍କୁ



ପଚାରିଲେ । ମୁଖ୍ୟ ଆଗନ୍ତୁକଙ୍କ ସ୍ୱର ଶୁଣିବା ମାତ୍ରେ ବୁଝିଲେ, ସେ ରାଜାଙ୍କ ପ୍ରଧାନମନ୍ତ୍ରୀ । ଛଦ୍ମବେଶରେ ବୁଲି ଆସିଛନ୍ତି ।

ମୁଖ୍ୟ ତତ୍ପର ହୋଇ ତାଙ୍କୁ ଆସନ ଦେଲେ । ମନ୍ତ୍ରୀ କହିଲେ, "ତମକୁ ମୁଖ୍ୟ ପଦରେ କାହିଁକି ରଖା ଯାଇଛି? ତମେ ଗ୍ରାମବାସୀଙ୍କ ଭଲମନ୍ଦ ବୁଝିବ । କିନ୍ତୁ ତମ ଗାଁର ଦୋକାନୀ ଦୁଃଶାସନ ଖାଲି ଭେଜାଲ ବିକୁଛି ସେତିକି ନୁହେଁ, ଗ୍ରାହକମାନଙ୍କ ପ୍ରତି ଅତ୍ୟନ୍ତ ଅସଭ୍ୟ ବ୍ୟବହାର କରୁଛି । ତମେ ତାକୁ ଦଣ୍ଡ ଦେଉନାହଁ କାହିଁକି?"

"ହଜୁର୍, ସେ ଭେଜାଲ୍ ବିକୁଛି ବୋଲି ସମସ୍ତେ ଜାଣନ୍ତି । କିନ୍ତୁ କଥା କ'ଣ କି ସେ ନିଜେ ଜିନିଷପତ୍ର ଭେଜାଲ୍ କରୁଛି ବୋଲି ପ୍ରମାଣ ନାହିଁ । ସେ ଯେଉଁଠାରୁ ଜିନିଷପତ୍ର କିଣୁଛି, ସେମାନେ ତାକୁ ଭେଜାଲ୍ ଯୋଗାଇ ଦେଉଛନ୍ତି । ତେବେ ଲୋକଙ୍କଟାକୁ ବ୍ୟବହାର ଜଣାନାହିଁ । ସେଇଟା ଗୋଟାଏ ଅଜ୍ଞାନ, ମୂଢ଼ । ତାକୁ କ୍ଷମା କରନ୍ତୁ ।" ଗ୍ରାମମୁଖ୍ୟ କହିଲେ ଓ ସଙ୍ଗେ ସଙ୍ଗେ ଦୁଃଶାସନକୁ ଡକାଇ ପଠାଇଲେ ।

"ଦେଖ, ଅଜ୍ଞାନ ବଶତଃ ଯଦି ସେ ଏପରି ଦୁର୍ବ୍ୟବହାର କରୁଥାଏ, ତେବେ ବି ସେ ଶିଖିବା ଉଚିତ । ସେଭଳି ଲୋକ ଉପଦେଶରେ ଶିଖିବେ ନାହିଁ । ତାକୁ ଦଣ୍ଡ ଭୋଗିବାକୁ ପଡ଼ିବ ।" ମନ୍ତ୍ରୀ କହିଲେ ।

ଗୁହୁଁ ଗୁହୁଁ ଦୁଃଶାସନ ଆସି ପହଞ୍ଚିଗଲା । ସେତେବେଳକୁ ସବୁକଥା ତାକୁ ମାଲୁମ୍ ହୋଇଯାଇଥାଏ । ସେ ଆସି ସିଧା ମନ୍ତ୍ରୀଙ୍କ ଗୋଡ଼ତଳେ ପଡ଼ିଗଲା ଓ କହିଲା, "ହଜୁର୍, ମୁଁ ବାସ୍ତବିକ ମୂଢ଼, ପାଷଣ୍ଡ । ମୋତେ ଯେଉଁ ଦଣ୍ଡ ଦେବେ ଦିଅନ୍ତୁ । ବିଳମ୍ବ କାହିଁକି? ଆମ ମୁଖିଆଙ୍କ ଘରେ ଛାଟ ଅଛି । ସେଇଥିରେ ମୋତେ ପିଟନ୍ତୁ ।"

ମନ୍ତ୍ରୀଙ୍କର ଦୟା ହେଲା । ସେ କହିଲେ, "ହେଲା, ହେଲା, ଏଥର ଉଠ । ତମେ ମୋତେ ଯେପରି ଅପମାନ ଦେଲ, ସେକଥା ମୁଁ ପାଶୋରି ଦେଉଛି । କିନ୍ତୁ ବର୍ଷ ବର୍ଷ ଧରି ତମେ ଗ୍ରାମର ସବୁ ଲୋକଙ୍କ ସହ ଦୁର୍ବ୍ୟବହାର

କରିଛ । ତେଣୁ ସର୍ବ ସମକ୍ଷରେ ତମକୁ କଠୋର ଦଣ୍ଡ ମିଳିବା ଆବଶ୍ୟକ । ଅବଶ୍ୟ ସମସ୍ତେ ଯଦି ତମକୁ କ୍ଷମା କରିଦେବେ, ତେବେ ମୁଁ କିଛି କହିବି ନାହିଁ ।"



ମନ୍ତ୍ରୀଙ୍କ ନିର୍ଦ୍ଦେଶରେ ଗ୍ରାମମୁଖ୍ୟ ସନ୍ଧ୍ୟାବେଳକୁ ଗ୍ରାମବାସୀମାନଙ୍କୁ ଏକତ୍ର ହେବାକୁ ଖବର ଦେଲେ ।

ଏଣେ ଦୁଃଶାସନ ଘର ଘର ବୁଲି ସମସ୍ତଙ୍କୁ ନେହୁରା ହୋଇ କହିଲା, "ଯାହା ଯେତେ ଦୁର୍ବ୍ୟବହାର କରିଛି, ସବୁ ଭୁଲିଯାଅ ଭାଇମାନେ । ଏଣିକି ଆଉ ସେପରି କରିବି ନାହିଁ ।" କେତେ ଲୋକଙ୍କଠାରୁ ଅଳ୍ପ ଅଳ୍ପ ପାଉଣାପତ୍ର ଥିଲା! ସେସବୁ ସେ ଛାଡ଼ିଦେଲା । ଆଉ କେତେକଙ୍କୁ ଶସ୍ତାରେ ଜିନିଷ ଦେବାର ପ୍ରତିଶ୍ରୁତି ଦେଲା । ଲୋକେ ଦେଖିଲେ, ଯେତେହେଲେ ଦୁଃଶାସନ ଗାଁ ଲୋକ । ସେ ଯଦି ଅନୁତାପ କରୁଛି ଓ ଭବିଷ୍ୟତରେ ଭଲ ହେବ ବୋଲି କହୁଛି, ତେବେ ତା' ବିରୁଦ୍ଧରେ ଅଭିଯୋଗ କରି ଲାଭ କ'ଣ!

ସନ୍ଧ୍ୟାବେଳେ ସମସ୍ତଙ୍କ ଆଗରେ କାନ୍ଦି କାନ୍ଦି ହୋଇ ଦୁଃଶାସନ ମନ୍ତ୍ରୀଙ୍କୁ ଉଦ୍ଦେଶ୍ୟ କରି କହିଲା, "ହଜୁର୍, ମୁଁ ପ୍ରକୃତରେ ଶାନ୍ତ ଶିଷ୍ଟ ମଣିଷ । ତେବେ ମଧ୍ୟେ ମଧ୍ୟେ ମୋର ବେମାର ହୁଏ । ସେତେବେଳେ ମିଜାସ୍ ଖରାପ ହୋଇଯାଏ ଓ ମୁଁ ଖରାପ ବ୍ୟବହାର କରେଁ । ହଜୁର୍, ମୋ ଦୁର୍ବ୍ୟବହାର ପାଇଁ ମୋ ସ୍ୱଭାବ ଦାୟୀ ନୁହେଁ, ମୋ ବେମାର ଦାୟୀ!"

"ହଁ ଆଜ୍ଞା, ଦୁଃଶାସନ ମିଛ କହୁନାହିଁ ।" ଗ୍ରାମବାସୀମାନେ କହିଲେ । ମନ୍ତ୍ରୀ ସନ୍ତୁଷ୍ଟ ହେଲେ ।

ହଠାତ୍ ଜନତା ଭିତରୁ ବାହାରି ଆସିଲା ଦୁଃଶାସନର ଚାକର । ସେ ଦୁଃଶାସନକୁ ଆଙ୍ଗୁଠି ପକାଇ କହିଲା, "ମାଲିକ, ତମେ ସବୁଦିନେ ମୋତେ ବକାବକି କର । ମୋତେ ମାଡ଼ ଦିଅ । ମୁଁ ଭାବିଥିଲି ତମେ ଖରାପ ଲୋକ । ତେଣୁ ଦିନେ ସୁଯୋଗ ପାଇଲେ ତମକୁ ଛେଚା ଦେବି ବୋଲି ଭାବିଥିଲି । ଆଜି ଜାଣୁଛି ତମର କୋପ ତମ ବେମାର

ଯୋଗୁଁ । ହାୟ, ହାୟ, ତମ ଉପରେ ରାଗିବା ମୋର ଅପରାଧ ହୋଇଛି !"

ଦୁଃଶାସନ ଆଉ କ'ଣ କହିବ! ଗାଁ ଲୋକେ କୌଣସି ମତେ ହସ ଚାପି ରହିଲେ । ସେ ଚାକର ଅତ୍ୟନ୍ତ ସରଳ ପ୍ରକୃତିର ମଣିଷ ବୋଲି ସମସ୍ତେ ଜାଣିଥିଲେ ।

ଚାକର ଟୋକା ତା'ପରେ ମନ୍ତ୍ରୀଙ୍କୁ ପ୍ରଣାମ କରି କହିଲା, "ହଜୁର୍, ଦଶବର୍ଷ ହେଲା ସବୁଦିନେ ମୋ ମାଲିକ ବେମାର ଭୋଗୁଛନ୍ତି ବୋଲି ବୁଝୁଛି । ଆପଣଙ୍କର ଅସାଧ୍ୟ କ'ଣ! ଆପଣ ଔଷଧ ଦେଇ ତାଙ୍କ ବେମାର ଭଲ କରି ଦିଅନ୍ତୁ । ଦୟା କରନ୍ତୁ ହଜୁର!"

ମଂତ୍ରୀ ବୁଝିଲେ ଦୁଃଶାସନର ଅସଲ ସ୍ୱଭାବ । ସେ କହିଲେ, "ଆଚ୍ଛା, ଆଚ୍ଛା ଔଷଧ ଦେବି । ସେ ଔଷଧରେ ଫଳ ହେଉଛି କି ନା, ମୋ କର୍ମଚାରୀ ଆସି ତମକୁ ପଚାରି ବୁଝିଯିବେ । କାରଣ ତମେହିଁ ଠିକ୍ ଭାବରେ ସେକଥା କହିପାରିବ ଦେଖୁଛି ।"

ଏହାପରେ ସେ ଦୁଃଶାସନକୁ କହିଲେ, "ଏଇଆ କଥା ହେଲା, ତମେ ଏଣିକି ଭେଜାଲ୍ ବିକିବ ନାହିଁ । ଯଦି ତମକୁ ମାଲ ଯୋଗାଉ-ଥିବା ଲୋକ ଭେଜାଲ୍ ଦେଉଥାଏ, ତମେ ତାହାଠୁଁ ନ ଆଣି ଅନ୍ୟଠାରୁ ଆଣିବ । ରାଜି?"

"ରାଜି, ହଜୁର!" ଦୁଃଶାସନ କହିଲା ।

"ଆଉ ତମ ବ୍ୟବହାର ଏଣିକି ଭଲ ହେଉଛି କି ନାହିଁ, ସେକଥା ମଝେ ମଝେ ମୋ ଲୋକ ଆସି ତମ ଚାକରଠାରୁ ବୁଝିଯିବେ । ରାଜି?"

"ରାଜି ହଜୁର୍!"

ମଂତ୍ରୀ ବିଦାୟ ନେଇ ଚାଲିଗଲେ । ଦୁଃଶାସନର ବ୍ୟବହାର ପ୍ରକୃତିରେ ବଦଳିଗଲା । ଚାକର ଟୋକା ସମସ୍ତଙ୍କୁ ଆନନ୍ଦରେ କହେ, "ମୋ ମାଲିକଙ୍କର ଦଶବର୍ଷର ବ୍ୟାଧିକୁ ମଂତ୍ରୀ ଦିନକରେ କି ଔଷଧ ଦେଇ ଭଲ କରିଦେଲେ କେଜାଣି! ସେ ଲୁଚେଇ କରି ଔଷଧ ଦେଇଗଲେ!"





[ ୪ ]

[ପଦ୍ମପାଦ ଓ ପିଙ୍ଗଳ ପାହାଡ଼ପୂର୍ଣ୍ଣ ବଣ ଭିତରେ ଯାଇ ପହଞ୍ଚିଲେ । ସେଠାରେ ଏକ ସରୋବରକୁ ସ୍ନାନ କରିବାକୁ ଯାଇ ପିଙ୍ଗଳ ଭଲ୍ଲୁକକେତୁ ନାମକ ଭୀଷଣାକୃତି ଜୀବ ବନ୍ଦୀ ହୋଇଥିବାର ଦେଖିଲା । ଭଲ୍ଲୁକକେତୁର ଅନୁରୋଧରେ ସେ ତାକୁ ମୁକ୍ତ କରିବାକୁ ଯାଉଛି, ପଛରୁ କିଏ ଚିତ୍କାର କରି ତାକୁ ସେଥିରୁ କ୍ଷାନ୍ତ ହେବାକୁ ନିର୍ଦ୍ଦେଶ ଦେଲା । ତା'ପରେ...]

ଭଲ୍ଲୁକକେତୁ ଆଡ଼େ ଅଗ୍ରସର ହେଉଥିବା ପିଙ୍ଗଳ ପଛରୁ ଚିତ୍କାର ଶୁଣି ପଛକୁ ଅନାଇ ଦେଖିଲା, ପଦ୍ମପାଦହିଁ ତା' ଆଡ଼କୁ କ୍ଷିପ୍ର ଗତିରେ ଦୌଡ଼ି ଆସୁଛି ।

ପିଙ୍ଗଳ ଚମକି ପଡ଼ିବାରୁ ତା' ହାତରେ ଥିବା ଶିଳ ଖଣ୍ଡ ସରୋବର ଭିତରେ ଖସି ପଡ଼ିଲା । ଭୀଷଣ ଶବ୍ଦ ହେଲା ।

କଠୋର କଣ୍ଠରେ ପଦ୍ମପାଦ ପଚାରିଲା, "ପିଙ୍ଗଳ, ତମେ ଜାଣ ସିଏ କିଏ?" ପିଙ୍ଗଳ ଭଲ୍ଲୁକକେତୁ ଆଡ଼େ ଥରେ ଚାହିଁଦେଇ ଜିଜ୍ଞାସୁ ଭାବରେ ପଦ୍ମପାଦ ଆଡ଼େ ଅନାଇଲା ।

ବ୍ୟଥିତ କଣ୍ଠରେ ଭଲ୍ଲୁକକେତୁ ପଚାରିଲା, "ମହାଶୟ, ଆପଣ କାହିଁକି ଏ ଯୁବକକୁ ଗୋଟିଏ ପୁଣ୍ୟକାର୍ଯ୍ୟରୁ ବିରତ କଲେ?"



"ପୂଜ୍ୟ କାର୍ଯ୍ୟ?" ପଦ୍ମପାଦ ଅଟ୍ଟହାସ୍ୟ କରି ପଚାରିଲା । "ତମେ କିଏ ମୁଁ ଜାଣେ ନାହିଁ ବୋଲି ମନେକର? ମୁଁ ତମ କଥା ସବୁ ଜାଣେ ।"

ଭଲ୍ଲୁକକେତୁ କିଛି କହିବା ପୂର୍ବରୁ ପିଙ୍ଗଳ ପଦ୍ମପାଦକୁ କହିଲା, "ଏହାର ନାମ ଭଲ୍ଲୁକକେତୁ । ଦିନେ ଇଏ ଥିଲା ଭଲ୍ଲୁକ ପର୍ବତର ମାଲିକ । କୌଣସି ତାନ୍ତ୍ରିକ ଯୋଗୁଁ ଏହାର ଏ ଦୁର୍ଦ୍ଦଶା ହୋଇଛି—ମୁଁ ଏତିକି ଶୁଣିଛି ।"

"ତମେ ଠିକ ଶୁଣିଛ । ସେ ତାନ୍ତ୍ରିକର ନାମ କ'ଣ ଜାଣିଛ?" ପଦ୍ମପାଦ ପଚାରିଲା ।

"ନା!" ଉତ୍ତର ଦେଲା ପିଙ୍ଗଳ ।

"ଏ ଭଲ୍ଲୁକକେତୁକୁ ଜବତ କରି ଏ ଶିଳା ଦେହରେ ବନ୍ଦୀ କରିବା ଲୋକ ହେଲେ ମହାତାନ୍ତ୍ରିକ ମହାମାୟୁ ।" ଏହା କହି ପଦ୍ମପାଦ ଭଲ୍ଲୁକକେତୁ ଆଡ଼େ ତୀବ୍ର ଦୃଷ୍ଟିରେ ଅନାଇଲା ।

ଭଲ୍ଲୁକକେତୁ କ୍ଷୁବ୍ଧ ହେଲା । ତଥାପି କ୍ରୋଧ ଲୁଚିରଖି ସେ ପଚାରିଲା, "କିଏ ତମେ ମହାଶୟ? ମହାମାୟୁକୁ ଜାଣିଲ କିପରି? ତମେ ନିଜେ କୌଣସି ତାନ୍ତ୍ରିକ ନୁହଁ ତ?"

"ହଁ, ହଁ, ମୁଁ ବି ଜଣେ ତାନ୍ତ୍ରିକ । ମୋ ନାମ ପଦ୍ମପାଦ । ତମେ କେଡ଼େ ବଳବାନ ଓ ଚତୁର, ସେକଥା ମୋତେ ମାଲୁମ୍ ଅଛି । ତମକୁ ଯେଉଁ ମହାମାୟୁ ବନ୍ଦୀ କରିଥିଲେ, ତାଙ୍କ ସମାଧି ଖୋଳିବା ଉଦ୍ଦେଶ୍ୟରେ ଆମେ ଯାଉଛୁଁ ।" ପଦ୍ମପାଦ କହିଲା ।

"ତମେ ଯାହା କହୁଛ ସେଥିରେ ବିଶ୍ୱାସ କରିବା ସହଜ ନୁହେଁ । ସତରେ ଯଦି ତମେ ମହାମାୟୁର ସମାଧି ଖୋଳିବାକୁ ସକ୍ଷମ, ତେବେ ତ ତମେ ମହାତାନ୍ତ୍ରିକ ହୋଇଥିବ । ଶୁଣ, ସେ ଥିଲା ମୋର ଶତ୍ରୁ । ତେଣୁ ମୁଁ ତମ କାମରେ ତମକୁ ସାହାଯ୍ୟ କରିବି । ମୋତେ ମୁକ୍ତ କରି ଦେଉନାହଁ କାହିଁକି?" ଭଲ୍ଲୁକକେତୁ ମିନତିଭରା କଣ୍ଠରେ କହିଲା ।

"କୌଣସି କପଟ ବାକ୍ୟରେ ଭୁଲିବା ଲୋକ ମୁଁ ନୁହେଁ ।" ପଦ୍ମପାଦ କହିଲା ।




ପିଙ୍ଗଳ କହିଲା, "ନିଜ କଥା ଭାଙ୍ଗିଲେ ଏହାର ମୁଣ୍ଡ ଦୁଇଫାଳ ହୋଇଯିବ ବୋଲି ଭୁଆଡ଼େ ଏହା ଉପରେ ଅଭିଶାପ ଅଛି। ତାହା ଯଦି ସତ୍ୟ ହୋଇଥାଏ, ତେବେ ଏହାକୁ ମୁକ୍ତି ଦେଲେ କ୍ଷତି କ'ଣ?"

"ଯେ ପର୍ଯ୍ୟନ୍ତ ମହାମାୟୀର ମନ୍ତ୍ରଶକ୍ତି ଆମେ ଆୟତ୍ତ ନ କରିଛୁଁ ସେ ପର୍ଯ୍ୟନ୍ତ ଭଲ୍ଲୁକକେତୁକୁ ମୁକ୍ତ କରିବା ଠିକ୍ ହେବ ନାହିଁ। ଏହା କଥାରେ ବିଶ୍ୱାସ କରି ବିପଦ ଡାକି ଆଣିବା ବୋକାମି ହେବ।" ପଦ୍ମପାଦ ବୁଝାଇଲା।

ଭଲ୍ଲୁକକେତୁ ପଦ୍ମପାଦକୁ ପୁଣି ହୁଏତ କୌଣସି ଅନୁରୋଧ କରିବାକୁ ଯାଉଥିଲା। କିନ୍ତୁ ପଦ୍ମପାଦ ତାକୁ ସେ ସୁଯୋଗ ନଦେଇ କହିଲା, "ଭଲ୍ଲୁକ, ମଧୁର କଥା କହି ଆମକୁ ଧୋକା ଦେବା ତୋ ପକ୍ଷରେ ସମ୍ଭବପର ହେବ ନାହିଁ। ମହାମାୟୀର ସମାଧି ଯେଉଁ ଭଙ୍ଗା ଦେଉଳ ଭିତରେ ରହିଛି, ଆଗେ ତହିଁ ଭିତରେ ପ୍ରବେଶ କରି ସାରିଲେ ଯାଇ ଆଉ ଯେଉଁ କଥା। ସେ ପର୍ଯ୍ୟନ୍ତ ତୋତେ ବନ୍ଦୀ ହୋଇ ରହିବାକୁ ପଡ଼ିବ।" ଏହା କହି ପଦ୍ମପାଦ ପଛକୁ ବୁଲି ପଡ଼ିଲା। ପିଙ୍ଗଳ ତାକୁ ଅନୁସରଣ କଲା।

ଦୁହେଁ ଜଙ୍ଗଲରୁ ବାହାରି ଆସିଲେ। ସେମାନଙ୍କ ବାହନ ଗଧ କାହିଁ ସେଠାରେ ନଥିଲା। ପିଙ୍ଗଳ ପଦ୍ମପାଦକୁ ପଚାରିଲା, "ଆମ ପିଶାଚ ବାହନ କ'ଣ ମୈଦାନରେ ଘାସ ଚରିବାକୁ ଯାଇଛି?"

"ଆରେ ଭାଇ, ସିଏ କ'ଣ ସତରେ ଗଧ ଯେ ଘାସ ଚରିବ? ସେ ଭିନ୍ନ ପ୍ରକାର ଆହାର ଖୋଜିବାକୁ ଯାଇଥିବ। ବର୍ତ୍ତମାନ ଆମେ ଖାଇବା କ'ଣ?" ଏହା କହି ପଦ୍ମପାଦ ସବୁଜ ଘାସ ଉପରେ ଶୋଇ ପଡ଼ିଲା।

ପିଙ୍ଗଳ ତା' ପାଖରେ ବସିପଡ଼ି କହିଲା, "ହଁ, ପଦ୍ମପାଦ, ମୋର ବି ପେଟରେ ହଂସା ଉଡ଼ିଗଲା ଭଳି ଅବସ୍ଥା ହେଲାଣି। ଯେମିତି ଗୋଟାଏ ଯୁଗ ହେଲାଣି ଆମେ ଖିଆପିଆ କରିନାହୁଁ!"

"ଆଚ୍ଛା, ଆଚ୍ଛା, ଧୈର୍ଯ୍ୟ ଧର।" ଏହା କହି ପଦ୍ମପାଦ ଗୋଟାଏ ଥଳି ପିଙ୍ଗଳ ଆଡ଼କୁ ବଢ଼ାଇ ଦେଇ କହିଲା, "ନିଅ, ଖାଅ!"




ପିଙ୍ଗଳ ଥଳିଟି ନେଇ ତହିଁ ଭିତରେ ହାତ ପୁରାଇଲା । କିନ୍ତୁ ଥଳିରେ କିଛି ନଥିଲା । ପଦ୍ମପାଦ ଅଳ୍ପ ହସି ସେ ପଚାରିଲା, "ପିଙ୍ଗଳ, ତମର କି ପ୍ରକାର ଖାଦ୍ୟ ପସନ୍ଦ ?"

"ବାବୁ, ଭୋକ ବେଳେ ମୁଠାଏ କଞ୍ଚା ଚାଉଳ ବି ଲଡୁ ଭଳି ସୁଆଦୁ ଲାଗିବ । କିନ୍ତୁ ତମ ଥଳିରେ ତ କିଛି ନାହିଁ । ଏପରି ପଚାରିବାର ଅର୍ଥ ?" ପିଙ୍ଗଳ ପଦ୍ମପାଦ ଥଟ୍ଟା କରୁଛି ଭାବି କହିଲା ।

ପଦ୍ମପାଦ ଥଳିର ମୁହଁ ଖୋଲି ତହିଁ ଭିତରକୁ ଅନାଇ କୌଣସି ମନ୍ତ୍ର ପଢ଼ିଲା । ତା'ପରେ ପିଙ୍ଗଳକୁ କହିଲା, "ନିଅ, ଏଥର ଦେଖ ।" ଥଳିଟି ସେ ପିଙ୍ଗଳ ହାତକୁ ବଢ଼ାଇଦେଲା ।

ପିଙ୍ଗଳ ଥଳି ଭିତରକୁ ହାତ ନେଇ ଅନୁଭବ କଲା ଭିତରେ ଗୋଟିଏ ପାତ୍ର ରହିଛି । ସେ ପାତ୍ରଟି ବାହାର କରି ଆଣିଲା । ଦେଖିବା ବେଳକୁ ସେଥିରେ ନାନା ଧରଣର ତାଜା ଖାଦ୍ୟ ସଜା ହୋଇ ରହିଛି ! ସେ ଆଶ୍ଚର୍ଯ୍ୟ ହୋଇ ପଦ୍ମପାଦ ଆଡ଼େ ଅନାଇଲା ।

ପଦ୍ମପାଦ ହସି ଦେଇ କହିଲା, "ଆଉ ବିଳମ୍ବ କାହିଁକି ? ପେଟପୂଜା ଆରମ୍ଭ କର !"

ପିଙ୍ଗଳ ସେସବୁ ସୁସ୍ୱାଦୁ ଖାଦ୍ୟର ସୁବ୍ୟବହାର କରିବାକୁ ଲାଗିଲା । ସେସବୁ ଖାଇ ଶେଷ କରିବା ବେଳକୁ ତାକୁ ଶୋଷ ଲାଗିଲା । ଅଳ୍ପ ଦୂରରେ ଗୋଟିଏ ଝରଣା ଥିଲା । ପିଙ୍ଗଳ ସେଥିର ପାଣି ପିଇବା ନିମନ୍ତେ ଅଗ୍ରସର ହେବାର ଦେଖି ପଦ୍ମପାଦ ତାକୁ ଡାକ ଦେଇ କହିଲା, "ସେ ଝରଣାର ଯାଦୁ ପାଣି ଯିଏ ପିଇବ ସେ ଭେଡା ହଇଯିବ । ତମ ପାଇଁ ଏହି ଥଳିରୁହିଁ ପାଣି ମିଳିବ ।"

ପିଙ୍ଗଳ ଝରଣା ଆଡ଼େ ନ ଯାଇ ପୁଣି ଥଳିଟି ଉଠାଇ ନେଇ ଭିତରକୁ ଅନାଇ ଦେଖିଲା, ଆଉ ଏକ ପାତ୍ରରେ ପାଣି ରହିଛି । ସେ ପାଣି ପାତ୍ର ବାହାର କରିନେଇ ଯାଦୁ ଝରଣା ଆଡ଼େ ଅନାଇବା ବେଳକୁ ତାହା ଆଉ ଦୃଷ୍ଟିଗୋଚର ହେଉ ନାହିଁ ।

ପାଣି ପିଇ ସାରି ପିଙ୍ଗଳ ବିଶ୍ରାମ କରିବାକୁ ଇଚ୍ଛା କଲା । ପଦ୍ମପାଦ ଗୋଟିଏ ଗଛ ମୂଳରେ ମନ୍ତ୍ରପାଠ କରି ସଙ୍ଗେ ସଙ୍ଗେ ତା' ପାଇଁ

ବିଛଣା ସୃଷ୍ଟି କଲା । ପିଙ୍ଗଳର ପେଟ ପୂରି ଯାଇଥାଏ । ସେ ଆରାମରେ ଶୋଇ ପଡ଼ିଲା । କିଛି ସମୟ ପରେ ଦୁହେଁ ପୁନର୍ବାର ଯାତ୍ରା ପାଇଁ ପ୍ରସ୍ତୁତ ହେଲେ ।

ପଦ୍ମପାଦ ଟିକିଏ ମାଟି ଉଠାଇ ନେଇ ତହିଁରେ ମନ୍ତ୍ର ପଢ଼ି ସେ ମାଟି ତଳକୁ ଛାଟିଦେଲା । ଚାହୁଁ ଚାହୁଁ ବିକଟ ରଡ଼କରି ସେ ମାଟି ତଳୁ ଯୋଡ଼ିଏ ପିଶାଚ ଗଧ ବାହାରି ଆସିଲେ । ଦୁଇ ଗଧ ଉପରେ ସେ ଦୁଇ ଯାତ୍ରୀ ସବାର୍ ହେଲେ ଓ ଭଲ୍ଲୁକ ପାହାଡ଼ ଉଦ୍ଦେଶ୍ୟରେ ଚାଲିଲେ ।

ବାଟରେ ପଦ୍ମପାଦ ପିଙ୍ଗଳକୁ କହିଲା, "ଏଥର ଆମେ ଯେଉଁ ଅଞ୍ଚଳରେ ପ୍ରବେଶ କରିବାକୁ ଯାଉଛୁଁ, ତାହା ମନ୍ତ୍ର ଓ ଯାଦୁର ଦେଶ । ଆମକୁ ପ୍ରତି ପଦକ୍ଷେପରେ ସତର୍କ ହୋଇ ଆଗକୁ ଯିବାକୁ ହେବ ।"

ଦୁଇ ତିନିଘଣ୍ଟା ଯାତ୍ରା ପରେ ଆକାଶରେ ଖଣ୍ଡିଏ ପ୍ରକାଣ୍ଡ କଳା ମେଘ ଘୋଟି ଆସିବାର ସେମାନେ ଦେଖିଲେ । ପିଙ୍ଗଳ ପଦ୍ମପାଦକୁ ପଚାରିଲା, "ଇଏ ମେଘ ନା ଧୂଆଁ ?"

ପଦ୍ମପାଦ ସେ ମେଘ ଆଡ଼େ ଅନାଇ କହିଲା, "ଇଏ ମେଘ ନୁହେଁ କି ଧୂଆଁ ନୁହେଁ । ଭଲ୍ଲୁକ ପାହାଡ଼ ଉପରେ ପହରା ଦେଉଥିବା ରାକ୍ଷସମାନେ କଳା ମେଘର ରୂପ ଧରି ଆମକୁ ଭୟଭୀତ କରିବାକୁ ଚେଷ୍ଟା କରୁଛନ୍ତି । ଆମେ ଆସୁଥିବା ଖବର ସେମାନଙ୍କୁ ମିଳି ଗଲଣି ।"




ସେ ମେଘ ଅଳ୍ପ ଆଗରେ ତଳୁ ଉପରକୁ ଉଠୁଥିବା ଭଳି ମନେ ହେଲା । ସେ ଦୃଶ୍ୟ ଦେଖି ପିଙ୍ଗଳକୁ ଡର ଲାଗିଲା । ପଦ୍ମପାଦ କୌଣସି ମନ୍ତ୍ର ପଢ଼ି ନିଜ ଗଧକୁ ସେହି ଆଡ଼କୁ ଛୁଟାଇଦେଲା । ସଙ୍ଗେ ସଙ୍ଗେ ସେ ମେଘ ଅନ୍ତର୍ହିତ ହୋଇଗଲା ।

ପଦ୍ମପାଦ ପିଙ୍ଗଳ ଆଡ଼କୁ ଅନାଇ ତାକୁ ଖଣ୍ଡିଏ ତରବାରି ଧରାଇଦେଇ କହିଲା, "ଭୟ ନାହିଁ । ତମର ଆତ୍ମରକ୍ଷା ପାଇଁ ଏ ଖଣ୍ଡିକ କାମ ଦେବ । ଏହା ଦ୍ୱାରା ତମେ ଯେ କୌଣସି ରାକ୍ଷସକୁ ମାରି ପାରିବ ।"

ହଠାତ୍ ତଳେ ମାଟି କମ୍ପି ଉଠିଲା । ପ୍ରଚଣ୍ଡ ଦାନ୍ତ ଥିବା ଗୋଟାଏ ଭୀଷଣ ହାତୀ ବାହାରି

ଆସି ପିଙ୍ଗଳକୁ ଆକ୍ରମଣ କଲା । ପିଙ୍ଗଳ କିନ୍ତୁ ଭୟ ନ କରି ତା ଉପରକୁ ଲୁହପଡ଼ ପଦ୍ମପାଦ ଦେଇଥିବା ଯାଦୁ ତରବାରି ସାହାଯ୍ୟରେ ତାକୁ ପ୍ରତିଆକ୍ରମଣ କଲା ।

ହାତୀ ହାଲିଆ ହୋଇ ପଡ଼ିଗଲା ।

"ସାବାସ୍ ପିଙ୍ଗଳ, ସାବାସ! ତମେ ବାସ୍ତବିକ ସାହସୀ ।" ପଦ୍ମପାଦ କହିଲା ।

"ମୋର ସାହସ କାହୁଁ ଆସନ୍ତା? ତମ ଯାଦୁ ତରବାରି ସାହାଯ୍ୟରେ ସିନା ମୁଁ ଏହା କରିପାରିଲି!" ପିଙ୍ଗଳ କହିଲା ।

"ଶୁଣ ପିଙ୍ଗଳ । ସତକଥା କହୁଛି । ସେ ତରବାରିରେ କୌଣସି ଯାଦୁ ଶକ୍ତି ନାହିଁ । କିନ୍ତୁ ଯାଦୁଶକ୍ତି ଅଛି ବୋଲି ଧାରଣାରେ ତମେ ଏତେ ବିକ୍ରମ ଦେଖାଇଲ । ଅର୍ଥାତ୍ ବିକ୍ରମ ତମ ଭିତରେ ଥିଲା । ସାହସ ଠାରୁ ବଡ଼ ସହାୟ ବାସ୍ତବିକ ଆଉ କେହି ନାହିଁ ।"

ପିଙ୍ଗଳ ଆଶ୍ଚର୍ଯ୍ୟ ହୋଇ ଥରେ ସେ ତରବାରି ଆଡ଼କୁ ଓ ଥରେ ତଳେ ପଡ଼ିଥିବା ହାତୀ ଆଡ଼କୁ ଅନାଇଲା ।

ପଦ୍ମପାଦ ହସି ଉଠି କହିଲା, "ବାଧା ବିପତ୍ତିରେ ଆମ ଭିତରେ ଥିବା ସାହସ ଓ ଦମ୍ଭର ବିକାଶ ହୁଏ । ତେଣୁ ଅସୁବିଧା ଓ ଦୁଃଖକଷ୍ଟକୁ ଭୟ କରିବା ପରିବର୍ତ୍ତେ ସେସବୁକୁ ସାମ୍ନା କରିବାକୁ ଶିଖିବାକୁ ପଡ଼ିବ ।"

ପିଙ୍ଗଳର ନିଜ ଶକ୍ତି ଉପରେ ଆସ୍ଥା ଆସି ଯାଇଥାଏ । ସେ ତରବାରିଟି ବାରମ୍ବାର ବୁଲାଇ କହିଲା, "ଠିକ୍ ଅଛି । ମନ୍ତ୍ର ଶକ୍ତି ଥାଉ ବା ନ ଥାଉ, ଯେ ପର୍ଯ୍ୟନ୍ତ ଏ ତରବାରି



ମୋ ହାତରେ ରହିଛି, ସେ ପର୍ଯ୍ୟନ୍ତ ମୋ ସାହସହିଁ ମନ୍ତ୍ର ଘବରେ କାମ ଦେବ । ଜୟ, ପାତାଳ-ଭୈରବୀଙ୍କର ଜୟ !"

ପିଙ୍ଗଳର ଉତ୍ସାହ ଦେଖି ପଦ୍ମପାଦ ପ୍ରସନ୍ନ ହେଲା । ସେ କହିଲା, "ଦେଖ ପିଙ୍ଗଳ, ଭଲ୍ଲୁକ ପାହାଡ଼ ଆଉ ବେଶି ଦୂର ନୁହେଁ । ଦୁଇ ପାହାଡ଼ ମଝିରେ ଥିବା ଘାଟିରେ ଆମ କାମ । ସେଠାକୁ ପାଦରେ ଚାଲି ଚାଲି ଯିବା ସହଜ ନୁହେଁ । ରାସ୍ତାରେ ବହୁତ କଷ୍ଟ । ତେଣୁ ସାବଧାନରେ ଗଧ ଉପରେ ବସ । ଉଡ଼ିଯିବାକୁ ପଡ଼ିବ ।"

ଦୁହେଁ ଦୁଇ ପିଶାଚ ଗଧ ଉପରେ ସତର୍କ ହୋଇ ବସିଲେ । ପଦ୍ମପାଦ ମନ୍ତ୍ର ପଢ଼ିଲା । ସଙ୍ଗେ ସଙ୍ଗେ ଦୁଇ ଗଧ ବଣ ଉପରକୁ ଉଠି ଘାଟି ଆଡ଼େ ଶୂନ୍ୟରେ ସଞ୍ଚରଣ କରି ଚାଲିଲେ । ଘାଟି ପାଖରେ ଗୋଟିଏ ନଦୀ କୂଳରେ ସେମାନଙ୍କୁ ଓହ୍ଲାଇ ଦେଇ ଗଧ ଦୁଇଟି ଅଦୃଶ୍ୟ ହୋଇଗଲେ ।

ପଦ୍ମପାଦ ସେ ନଦୀରେ ପ୍ରବେଶ କଲା ଓ ହାତରେ ଜଳ ଖେଳାଇ ଖେଳାଇ କୌଣସି ମନ୍ତ୍ର ପଢ଼ିଲା । ଚାହୁଁ ଚାହୁଁ ନଦୀରେ ବଡ଼ ବଡ଼ ଲହରୀ ଦେଖା ଦେଲା । ସେସବୁ ଲହରୀରୁ କ୍ଷୁଦ୍ର କ୍ଷୁଦ୍ର ଜଳକଣା ଆକାଶକୁ ଉଠିଯାଇ ଧୂଆଁ ଭଳି ଦିଶିଲେ ।

କିଛି ସମୟ ପରେ ପଦ୍ମପାଦ ନଦୀରୁ ବାହାରକୁ ଉଠି ଆସିଲା ଓ ଥଳରେ ଥିବା ବନ୍ଦ ପାତ୍ର ଆଣିବାକୁ ପିଙ୍ଗଳକୁ ଇଙ୍ଗିତରେ କହିଲା । ପିଙ୍ଗଳ ସଙ୍ଗେ ସଙ୍ଗେ ନିର୍ଦ୍ଦେଶ



ପାଳନ କଲା । ସେ ବନ୍ଦ ପାତ୍ର ଭିତରେ ମହାମାୟୀର ଦୁଇ ଶିଷ୍ୟ କୁମ୍ଭୀର-ବଗ ରୂପରେ ରହିଥିଲେ । ସେ ଦୁହିଙ୍କ ଆଡ଼େ ଅନାଇ ଗର୍ଜନ କରି ପଦ୍ମପାଦ କହିଲା, "ଏଥର ତମେମାନେ ନିଜ ରୂପ ଧରିବ ନା ତମକୁ ଭସ୍ମ କରି ଭସାଇ ଦେବି ?"

ପଦ୍ମପାଦର ଏ ଧମକ ଶେଷ ହେବା ମାତ୍ରେ ସେ ପାତ୍ରଟି ଫାଟିଗଲା । ତାହାର ଅଂଶମାନ ଚୂର୍ଣ୍ଣ ହୋଇ ପବନରେ ଉଡ଼ିଗଲେ । ଦୁଇଟି କଳା ଆକୃତି ପଦ୍ମପାଦକୁ ଅଭିବାଦନ କରି କହିଲେ, "ହେ ମହାତାନ୍ତ୍ରିକ, ଆମ୍ଭେମାନେ ଆପଣଙ୍କର ପରିଚାରକ । ଆମକୁ କ'ଣ କରିବାକୁ ପଡ଼ିବ, ଆଜ୍ଞା ଦିଅନ୍ତୁ ।"

ମହାମାୟୀର ସମାଧି ଯେଉଁ ଭଙ୍ଗା ମନ୍ଦିରରେ ଅଛି, ଆମକୁ ସେଠାକୁ ରାସ୍ତା ଦେଖାଇବାକୁ ପଡ଼ିବ । ପ୍ରଥମରେ ଏ ନଈ ଶୁଖାଇ ଦିଅ ।" ପଦ୍ମପାଦ କଠୋର କଣ୍ଠରେ ଆଦେଶ ଦେଲା ।

ଦୁଇ କଳା ଆକୃତି ପରସ୍ପର ମୁହାଁମୁହିଁ ହେଲେ । ସେମାନେ କ'ଣ କହିବେ କହିବେ ହୋଇ କହିପାରିଲେ ନାହିଁ ।

"କ'ଣ, ମୋ ଆଦେଶ ଶୁଣିପାରିଲ ନାହିଁ ?" ପଦ୍ମପାଦ ଧମକ ଦେଇ କହିଲା ।

ମହାମାୟୀର ସେ ଦୁଇ ଚେଲା ଥରିବାକୁ ଲାଗିଲେ । ତା'ପରେ କହିଲେ, "ମହାପ୍ରଭୁ ! ଏ ନଦୀ ଜଳ ଶୁଖାଇବାକୁ ହେଲେ କିମ୍ବା ସେ ଭଙ୍ଗା ମନ୍ଦିରରେ ପ୍ରବେଶ କରିବାକୁ ହେଲେ ପିଙ୍ଗଳ ନାମକ ଜଣେ ଧୀବର ଆପଣଙ୍କ ସାଙ୍ଗରେ ଥିବା ଦରକାର ।"

"ହେଇଟି, ପିଙ୍ଗଳ ମୋ ପାଖରେ ଉପସ୍ଥିତ । ଦେଖ !" ପଦ୍ମପାଦ ପିଙ୍ଗଳକୁ ଟିକିଏ ଆଗକୁ ଟାଣି ଆଣିଲା । ପିଙ୍ଗଳ ଆଡ଼କୁ ଆଶ୍ଚର୍ଯ୍ୟ ହୋଇ ଅନାଇ ସେ ଦୁଇ ଆକୃତି କହିଲେ, "ବେଶ୍ । ଏଥର ଆମେ ଆପଣଙ୍କ ଆଜ୍ଞା ପାଳନ କରିବାକୁ ପ୍ରସ୍ତୁତ ।" ଏହା କହି ଦୁହେଁ ଅଦୃଶ୍ୟ ହୋଇଗଲେ । (କ୍ରମଶଃ)






# ରାଜା ଓ ଜ୍ୟୋତିଷ

ନିଶା ଗରଜୁଥାଏ। ଝୁହାକୁ ଝୁହା ଶୀତଳ ପବନ ଗଛଲତା ଦୋହଲାଇ ଦେଉଥାଏ। ବର୍ଷା ସାଙ୍ଗକୁ ଶୁଭୁଥାଏ ଘନ ଘନ ବଜ୍ରପାତ ଶବ୍ଦ। ମଧ୍ୟେ ମଧ୍ୟେ ପୁଣି ଶ୍ୱାନ ଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କର ଅଟ୍ଟହାସ୍ୟ। ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ।

କିନ୍ତୁ ରାଜା ବିକ୍ରମ ତିଳେ ବି ବିଚଳିତ ବୋଧ ନକରି ପୁନର୍ବାର ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ। ତା'ପରେ ତାକୁ କାନ୍ଧରେ ପକାଇ ସେ ଶୁନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ଥରେ ଥରେ ଲୋକେ ବିପଦରେ ପଡ଼ିଯାଇ ଏମିତି ହତାଶ ହୋଇଯାଆନ୍ତି ଯେ ପରେ ସେମାନଙ୍କୁ

**ବେତାଳ କଥା**



ରଜାଙ୍କ ଆଗରେ ସେତେବେଳେ ଗୋଟାଏ ସମସ୍ୟା ଦେଖାଦେଇଥାଏ । ସେ ଯୁବରାଜଙ୍କୁ ରାଜ୍ୟଶାସନ ଭାର ଦେଇ ନିଜେ ରାଜଧାନୀରୁ ଦୂରେଇ ଯାଇ ଶାନ୍ତିପୂର୍ଣ୍ଣ ଜୀବନ ଯାପନ କରିବାକୁ ଚାହୁଁଥିଲେ । କିନ୍ତୁ ତାଙ୍କ ଦରବାରରେ ଥିବା ରାଜଜ୍ୟୋତିଷ ତାଙ୍କୁ କହୁଥିଲେ, "ମହାରାଜ, ସେ ଦିଗରେ ବ୍ୟସ୍ତ ହେବାର କୌଣସି କାରଣ ନାହିଁ । ଆପଣ ଶତାୟୁ ହେବେ । ଆପଣଙ୍କ ସାମର୍ଥ୍ୟ ମଧ୍ୟ ଅତୁଟ ରହିଛି । ଯୁବରାଜ ବର୍ତ୍ତମାନ ପର୍ଯ୍ୟନ୍ତ ଶାସନ ପାଇଁ ଯୋଗ୍ୟ ହୋଇ ନାହାନ୍ତି । ତେଣୁ ଆପଣ ରାଜୁତି କରୁଥାନ୍ତୁ ।"

ରାଜା ଗୋପନରେ ସମ୍ବାଦ ପାଇଲେ କି ଯୁବରାଜ ଅତ୍ୟନ୍ତ ବିଳାସପ୍ରିୟ । ସେ କୌଣସି ଦାୟିତ୍ୱ ନେବାକୁ ମୋଟେ ପ୍ରସ୍ତୁତ ନୁହନ୍ତି । ତେଣୁ ସେ ରାଜଜ୍ୟୋତିଷଙ୍କୁ ଉତ୍କୋଚ ଦେଇ ଏପରି କହିବାକୁ ଶିଖାଇଛନ୍ତି ।

ରାଜା ରାମଶାସ୍ତ୍ରୀଙ୍କୁ ଡକାଇ ସବୁ କଥା ଗୋପନରେ କହିଲେ । "ଶାସ୍ତ୍ରୀ ମହୋଦୟ, ଆପଣ ମୋର ଏବଂ ଯୁବରାଜର ଜାତକ ଦେଖି ନିଃସଙ୍କୋଚରେ କହନ୍ତୁ ମୋ ସିଦ୍ଧାନ୍ତ ଭୁଲ କି ଠିକ୍ ।" ପ୍ରଥମେ ରାମଶାସ୍ତ୍ରୀ ଯୁବରାଜଙ୍କ ଜାତକ ଦେଖିଲେ । ହଠାତ୍ ଗମ୍ଭୀର ଭାବରେ ସେ କହିଲେ, "ମହାରାଜ, ଆଜି ଅର୍ଦ୍ଧ ରାତିରେ ଯୁବରାଜ ଜଣେ ଭିଲ୍ ଯୁବତୀକୁ ବିବାହ କରିବେ । ଆପଣ ଏକଥା ଜାଣନ୍ତି ତ ?"

କୌଣସି ସୁଯୋଗ ମିଳିଲେ ବି ତାହାର ଉପଯୋଗ କରନ୍ତି ନାହିଁ । ଆଶା କରେଁ ତୁମ ଅବସ୍ଥା ସେପରି ହେବ ନାହିଁ । ଗୋଟାଏ ଦୃଷ୍ଟାନ୍ତ ଦେଉଛି । ମନଦେଇ ଶୁଣ । ଶୁଣିଲେ ଶ୍ରମଭାର ଲଘବ ମନେ ହେବ ।"

ବେତାଳ ଗପିଲା : କୌଣସି ଏକ ନଗରରେ ଜଣେ ଗୁଣୀ ଜ୍ୟୋତିଷ ଥିଲେ । ତାଙ୍କ ନାମ ରାମଶାସ୍ତ୍ରୀ । ସେ ଯେତେ ଭବିଷ୍ୟତବାଣୀ କରୁଥିଲେ, ସବୁ ସତ୍ୟ ବୋଲି ପ୍ରମାଣିତ ହେଉଥିଲା । ତାଙ୍କ ସୁଖ୍ୟାତି ରାଜଧାନୀର ଅମାତ୍ୟମାନେ ଶୁଣିଲେ ଓ ସେମାନଙ୍କ ନିକଟରୁ ରାଜା ବି ତାଙ୍କ କଥା ଶୁଣିଲେ ।

City. Oct F—3 A P. 21



ରାଜା ଚମକି ପଡ଼ିଲେ । ସେ କହିଲେ, "ଯୁବରାଜ ମଧ୍ୟେ ମଧ୍ୟେ ଶୀକାର କରିବାକୁ ବଣ ଭିତରକୁ ଯାଏ । ଆଜିବି ଯାଇଛି । ମୁଁ ବର୍ତ୍ତମାନ ବଣକୁ ଯାଇ ବିବାହ ବନ୍ଦ କରିବି ।"

ଜ୍ୟୋତିଷଙ୍କୁ ଆଉ କିଛି କହିବାର ସୁଯୋଗ ନଦେଇ ରାଜା ବିନା ଦେହରକ୍ଷୀରେ ଘୋଡ଼ା ଝପଟାଇ ବଣ ଭିତରକୁ ଚାଲିଗଲେ । କିନ୍ତୁ ବଣରେ ପଶିବା ମାତ୍ରେ ତାଙ୍କୁ ଦଳେ ଡକାଏତଙ୍କୁ ସାମ୍ନା କରିବାକୁ ପଡ଼ିଲା । ସେମାନଙ୍କ କବଳରୁ ଖସି ଭିଲ୍ ବସ୍ତିରେ ପହଞ୍ଚିବା ବେଳକୁ ଯୁବରାଜ ବିବାହ କରି ସାରିଲେଣି ।

ରାଜା ଥିଲେ ବିବେକୀ । ସେ ବିବାହର ପବିତ୍ରତାକୁ ଅସମ୍ମାନ କରିବାକୁ ଚାହୁଁ ନଥିଲେ । ସେ ଭିଲ କନ୍ୟାକୁ ଯୁବରାଣୀ ରୂପେ ସ୍ୱୀକାର କରି ପୁତ୍ର ଓ ପୁତ୍ରବଧୂକୁ ନଅରକୁ ନେଇ ଆସିଲେ । ଜ୍ୟୋତିଷଙ୍କ ପ୍ରଥମ ଗଣନା ସତ୍ୟ ହେଲା ।

ପରଦିନ ଯୁବରାଜ ଶୁଣିଲେ କି ରାମଶାସ୍ତ୍ରୀହିଁ ତାଙ୍କ ଜାତକ ଦେଖି ବିବାହ ହେଉଥିବା କଥା ରାଜାଙ୍କୁ କହି ଦେଇଥିଲେ । ସେ ରାମଶାସ୍ତ୍ରୀଙ୍କୁ ଡାକି ଗୋପନରେ କହିଲେ, "ଦେଖ ଜ୍ୟୋତିଷ ମହାଶୟ, ମୁଁ ବର୍ତ୍ତମାନ ରାଜ୍ୟଭାର ନେବାକୁ ପ୍ରସ୍ତୁତ ନୁହେଁ । ପିତାଙ୍କୁ ସେହି ଅନୁସାରେ ପରାମର୍ଶ ଦିଅ । ତୁମକୁ ମୁଁ ପ୍ରଚୁର ପୁରସ୍କାର ଦେବି ।"

କିନ୍ତୁ ରାମଶାସ୍ତ୍ରୀ ସେଭଳି ପ୍ରଲୋଭନରେ ପ୍ରଭାବିତ ହେଲେ ନାହିଁ । ସେ ରାଜାଙ୍କୁ କହିଲେ, "ଆପଣ ଯଥାଶୀଘ୍ର ଯୁବରାଜଙ୍କର ଅଭିଷେକର ବ୍ୟବସ୍ଥା କରନ୍ତୁ । ଆପଣ ଥାଉଁ ଥାଉଁ ସେ ରାଜକାର୍ଯ୍ୟ ହାତକୁ ନେଲେ ଆପଣ ତାଙ୍କ ଭୁଲ ଭଟକା ସୁଧାରି ପାରିବେ ।"

ରାଜା ଚିନ୍ତିତ ଭାବରେ କହିଲେ, "ଯୁବରାଜ ଯେପରି ଭାବରେ ବିବାହ କଲା, ସେଥିରେ ଯେ ଆମ ରାଜବଂଶର ସମ୍ମାନ ହାନି ହୋଇଛି, ଏଥିରେ ସନ୍ଦେହ ନାହିଁ । ତେଣୁ ତାକୁ ରାଜପଦରେ ବସାଇବାକୁ ବାସ୍ତବିକ ମୋତେ ସଙ୍କୋଚ ଲାଗୁଛି ।"

"ମହାରାଜ, ଆପଣ ଚିନ୍ତା କରନ୍ତୁ ନାହିଁ । ଆପଣଙ୍କ ପୁତ୍ରବଧୂ ସୁଲକ୍ଷଣା । ସେ ଅଳ୍ପଦିନ ଭିତରେ ପ୍ରାସାଦର ନିୟମ ସବୁ ଶିଖିନେବେ । ଭବିଷ୍ୟତରେ ତାଙ୍କ ପରାମର୍ଶରେ ଚଳି ଯୁବରାଜ ବହୁତ ସମ୍ମାନ ଓ ପ୍ରତିପତ୍ତିର ଅଧିକାରୀ ହେବେ ।" ଜ୍ୟୋତିଷ କହିଲେ ।

ରାଜା ସେ ପରାମର୍ଶ ମାନି ନେଲେ । ଗୋଟିଏ ଶୁଭଦିନରେ ଯୁବରାଜଙ୍କୁ ରାଜପଦରେ ଅଭିଷିକ୍ତ କରାଗଲା ।

ପରଦିନହିଁ ନୂଆ ରାଜା ରାମଶାସ୍ତ୍ରୀଙ୍କୁ ଡକାଇ କଠୋର କଣ୍ଠରେ କହିଲେ, "ଜ୍ୟୋତିଷ! ତମକୁ ମୁଁ ଯାହା କରିବାକୁ କହିଲି, ତମେ ତା'ର ବିପରୀତ କଲ । ତମକୁ କାରାଦଣ୍ଡ ଭୋଗିବାକୁ ପଡ଼ିବ ।"

"ମହାରାଜ, କୌଣସି ପ୍ରକାର ପ୍ରଲୋଭନରେ ପଡ଼ି ଅସତ୍ୟ ଆଚରଣ କରିବା ମୋ ପକ୍ଷରେ ସମ୍ଭବପର ନୁହେଁ । ମୁଁ ରାଜାଙ୍କୁ ଯେଉଁ କଥା କହିନାହିଁ, ତାହା ଆପଣଙ୍କୁ କହୁଛି; ଶୁଣନ୍ତୁ । ରାଜା ଆଉ ମାତ୍ର ବର୍ଷଟିଏ ବଞ୍ଚିବେ । ତେଣୁ ତାଙ୍କଠାରୁ ଯେତେ ଯାହା ଶିଖିବାର ଶିଖି ନିଅନ୍ତୁ ।" ଜ୍ୟୋତିଷ କହିଲେ । କିନ୍ତୁ ତରୁଣ ରାଜା ଜ୍ୟୋତିଷଙ୍କୁ କାରାରୁଦ୍ଧ କଲେ ।

ସେକଥା ଶୁଣି ବୁଢ଼ା ରଜା ମର୍ମାହତ ହୋଇ କାରାଗାରରେ ଯାଇ ଜ୍ୟୋତିଷଙ୍କୁ ସାକ୍ଷାତ କରି କହିଲେ, "ମୋ ପୁଅର ଆଚରଣରେ ମୁଁ ମର୍ମାହତ । ଆପଣ ସାଧୁ ଓ ସତ୍ୟବାଦୀ । ଆପଣଙ୍କ ପ୍ରତି ଏଭଳି ବ୍ୟବହାର କରି ସେ କେଡ଼େ ପାପ କରୁଛି ସେକଥା ସେ



ଭୁଟିନାହିଁ । ଯାହାହେଉ, ମୁଁ ବର୍ତ୍ତମାନ ଆପଣଙ୍କୁ ମୁକ୍ତ କରିବାର ବ୍ୟବସ୍ଥା କରୁଛି ।”

“ମହାରାଜ ! ଆପଣ ମୋତେ ବ୍ୟସ୍ତ ହୁଅନ୍ତୁ ନାହିଁ । ମୋ ଜାତକରେ ବର୍ତ୍ତମାନ କାରାବାସ ଥିଲା । ମୋର ସୌଭାଗ୍ୟ ମୁଁ କୌଣସି ଅପରାଧ ଯୋଗୁଁ ଦଣ୍ଡ ଭୋଗ ନକରି ମୋ ସତ୍ୟବାଦିତା ଯୋଗୁଁ କାରାବାସ କରୁଛି । ଶୁଣନ୍ତୁ, ଏଥର କହିଦିଏଁ । ଆପଣ ଆଉ ଅଧିକ ଦିନ ବଞ୍ଚିବା କଥା ନୁହେଁ । ପୁଅକୁ ଯାହା ଶିଖାଇବାର ଶିଖାଇ ଦିଅନ୍ତୁ । ନିଜେ ଭଗବାନଙ୍କ ପାଦପଦ୍ମରେ ମନୋନିବେଶ କରନ୍ତୁ ।” ଜ୍ୟୋତିଷ କହିଲେ ।

ବୁଢ଼ା ରାଜା ଏପରି ବ୍ୟବସ୍ଥା କରିଦେଲେ ଯାହା ଫଳରେ କାରାଗାରରେ ରହିଥିଲେ ବି ରାମଶାସ୍ତ୍ରୀଙ୍କର କୌଣସି ଅସୁବିଧା ହେବ ନାହିଁ । ତାଙ୍କ ଖାଇବା ପିଇବା, ନୀତି ଏସବୁ ଠିକ୍ ଜଣେ ରାଜ ଅତିଥି ରାଜ୍ୟରେ ଯେପରି ଜୁଟିବା କଥା, ସେହିପରି ହେଲା ।

କିନ୍ତୁ ବୁଢ଼ା ରଜା ପୁଅକୁ କହିଲେ, “ତୋ ବ୍ୟବହାର ଯୋଗୁଁ ମୁଁ ବଡ଼ ଚିନ୍ତିତ । ଜ୍ୟୋତିଷ ଯାହା କିଛି କହିଛନ୍ତି, ସବୁ ତାଙ୍କ ସାଧୁତା ଯୋଗୁଁ ତଥା ତୋ ପ୍ରତି ଓ ମୋ ପ୍ରତି ଶୁଭେଚ୍ଛା ଯୋଗୁଁ । ମୋର ଆଉ ଅଧିକ ଦିନ ବଞ୍ଚିବାର ନାହିଁ । ତୁ ଏବେ ରାଜଗାଦିରେ ବସିବା ଯୋଗୁଁ ତୋତେ ମୁଁ ସବୁ ଶିଖାଇ ପାରିବି । ନହେଲେ ହଠାତ୍ ମୋ ମୃତ୍ୟୁ ହୋଇଥିଲେ ଶତ୍ରୁମାନେ ତୋତେ ହଇରାଣ କରିଥାନ୍ତେ । ବର୍ତ୍ତମାନ ତୁ ମୋ ମୃତ୍ୟୁ ପାଇଁ





ପ୍ରସ୍ତୁତ ରହ। ଜ୍ୟୋତିଷଙ୍କୁ ଯାଇ କ୍ଷମା ମାଗି ମୁକ୍ତ ଦେ।"

"ପିତା, ଜ୍ୟୋତିଷ ବିଦ୍ୟାରେ ମୋର ବିଶ୍ୱାସ ନାହିଁ। ଆଉ ଆପଣଙ୍କ ମୃତ୍ୟୁ କଥା କହି ସେ ଆମ ମନରେ ଆତଙ୍କ ସଞ୍ଚାର କରୁଛନ୍ତି ବୋଲି ମୋର ବିଶ୍ୱାସ। ଏଥିରେ ଶତ୍ରୁ ପକ୍ଷର ପ୍ରଚ୍ଛନ୍ନ ହାତ ଥାଇପାରେ। ସେ ଯାହାହେଉ, ସତରେ ଯଦି ବର୍ଷକ ଭିତରେ ଆପଣଙ୍କ ମୃତ୍ୟୁ ହୁଏ, ତେବେ ମୁଁ ଜ୍ୟୋତିଷଙ୍କୁ ମୁକ୍ତ ଦେବି ଓ କ୍ଷମା ମାଗିବି।" ତରୁଣ ରାଜା କହିଲେ।

ଏହାପରେ ତରୁଣ ରାଜା ପିତାଙ୍କ ପ୍ରତି ଯେପରି କୌଣସି ବିପଦ ନ ହୁଏ ସେ ଦିଗରେ ବିପୁଳ ବ୍ୟବସ୍ଥା କଲେ। ବିଶ୍ୱସ୍ତ ଦେହରକ୍ଷୀମାନେ ବୁଢ଼ା ରାଜାଙ୍କ ଘର ଚତୁର୍ଦ୍ଦିଗରେ ଜଗି ରହିଲେ। ସବୁଦିନେ ଦଳେ ଚିକିତ୍ସକ ରାଜାଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କଲେ। ସାମାନ୍ୟ କିଛି ଦୈହିକ ଅସୁବିଧା ଦେଖାଦେବା ମାତ୍ରେ ତାହାର ଚିକିତ୍ସା କରାଗଲା। ରାଜାଙ୍କ ଖାଦ୍ୟ ପେୟ ସବୁଦିନେ ବିଶେଷଜ୍ଞମାନଙ୍କ ଦ୍ୱାରା ନିଶ୍ଚୟ କରାଗଲା।

କିନ୍ତୁ ବର୍ଷେ ପୂରିବାକୁ ଅଳ୍ପଦିନ ଅଛି, ଗୋଟାଏ ଅପ୍ରତ୍ୟାଶିତ ଘଟଣାରେ ବୁଢ଼ା ରାଜା ମରିଗଲେ। ତାଙ୍କ ଶଯ୍ୟା ଉପରେ ଯେଉଁ ଲଣ୍ଠନ ଝୁଲୁଥାଏ, ଗୋଟିଏ ଝିଟିପିଟି ସେଥିରେ ଚଢ଼ି ଯାଇଥିଲା। ହଠାତ୍ ସେ ରାଜାଙ୍କ ଛାତି ଉପରେ ଖସି ପଡ଼ିଲା। ରାଜା ଚମକି ଉଠିଲେ। ତାଙ୍କ ହୃଦ୍‌ଯନ୍ତ୍ର ବନ୍ଦ ହୋଇଗଲା।

ଏତେ ସତର୍କ ହେବା ସତ୍ତ୍ୱେ ଜ୍ୟୋତିଷଙ୍କ ଭବିଷ୍ୟତ୍‌ବାଣୀ ଫଳିବାର ଦେଖି ତରୁଣ ରାଜା ଆଶ୍ଚର୍ଯ୍ୟ ହୋଇଗଲେ। ସେ ଦୌଡ଼ିଯାଇ ଜ୍ୟୋତିଷଙ୍କୁ ମୁକ୍ତ ଦେଲେ ଓ କ୍ଷମା ପ୍ରାର୍ଥନା କଲେ।

"ମହାରାଜ, ଆପଣ ଦୁଃଖ ଅନୁଭବ କରିବାର କୌଣସି କାରଣ ନାହିଁ। ମୋ ଭାଗ୍ୟରେ ଯାହା ଘଟିବାର ଥିଲା ତାହା ଘଟିଛି। ବରଂ ଆପଣଙ୍କ ପିତା ଓ ଆପଣଙ୍କ ସୌଜନ୍ୟରୁ କାରା-ବିପଦ ଭଲରେ କଟିଗଲା।" ରାମଶାସ୍ତ୍ରୀ କହିଲେ।

ବୁଢ଼ା ରାଜାଙ୍କ ଶ୍ରାଦ୍ଧ କର୍ମ ଶେଷ ହେବା ପରେ ତରୁଣ ରାଜା ଜ୍ୟୋତିଷଙ୍କୁ କହିଲେ,

"ମହାଶୟ, ଆପଣ ଅନୁଗ୍ରହ କରି ମୋ ଦରବାରରେ ମୋର ପ୍ରଧାନ ପରାମର୍ଶଦାତା ରୂପେ ରହନ୍ତୁ ।"

"ମହାରାଜ! ସେ ଦିଗରେ ମୋର ଯୋଗ୍ୟତା ନାହିଁ । କ୍ଷମା କରନ୍ତୁ । ତା' ଛଡ଼ା ଶେଷ ଜୀବନ ତୀର୍ଥରେ ରହିବି ବୋଲି ବହୁଦିନରୁ ମୁଁ ଆଶା କରିଛି । ମୋତେ ସେଥିରୁ ବଞ୍ଚିତ କରନ୍ତୁ ନାହିଁ ।" ଜ୍ୟୋତିଷ କହିଲେ । ତରୁଣ ରାଜା ଆପତ୍ତି କଲେ ନାହିଁ । ବହୁ ପୁରସ୍କାର ଓ ସମ୍ବର୍ଦ୍ଧନା ଦେଇ ତାଙ୍କୁ ବିଦାୟ ଦେଲେ ।

ବେତାଳ କାହାଣୀଟି ଏତିକିରେ ଶେଷ କରି କଣ୍ଠସ୍ୱର କଠୋର କରି ପ୍ରଶ୍ନ କଲା, "ରାଜା! ଜ୍ୟୋତିଷ ତରୁଣ ରାଜାଙ୍କର ଅନୁରୋଧ ପ୍ରତ୍ୟାଖ୍ୟାନ କରିବାର ପ୍ରକୃତ କାରଣ କ'ଣ ହୋଇପାରେ? ସେ କାରାଦଣ୍ଡ ଭୋଗି ଡରି ଯାଇଥିଲେ । ସେଥିପାଇଁ ସେ ଏଡ଼େ ବଡ଼ ସୁଯୋଗ ପାଇ ମଧ୍ୟ ତାକୁ ଛାଡ଼ି ଦେଲେ । ଏଇଆ ନୁହେଁ କି? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମାତ୍ର ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, "ଜ୍ୟୋତିଷ ପ୍ରବର ରାମଶାସ୍ତ୍ରୀ ଭୟଭୀତ ହୋଇ ନଥିଲେ । ସେ ସତକଥା ହିଁ କହିଥିଲେ । ସିଏ ଭବିଷ୍ୟତ କହିବାର ଶକ୍ତି ରଖୁଥିଲେ । ପରାମର୍ଶ ଦେବା ସକାଶେ ଯେଉଁ ବିଚାର ବୁଦ୍ଧି ଆବଶ୍ୟକ, ସେସବୁ ପ୍ରତି ସେ କେବେ ଗୁରୁତ୍ୱ ଦେଇ ନଥିଲେ । ରାଜାଙ୍କର ପ୍ରଧାନ ପରାମର୍ଶଦାତା ରାଜନୀତି ବୁଝିବା ଲୋଡ଼ା । ଜ୍ୟୋତିଷଙ୍କର ସେଥିରେ ପ୍ରବେଶ ନଥିଲା ।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସି ଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)



# ସତ୍ୟବାଦୀ ଚୋର !

ନୀଳକଣ୍ଠ ଆଚାର୍ଯ୍ୟ ଥିଲେ ପ୍ରଖ୍ୟାତ ପଣ୍ଡିତ । ତାଙ୍କ ପାଣ୍ଡିତ୍ୟରେ ଖୁସି ହୋଇ ରାଜା ତାଙ୍କୁ ହଳେ ସୁବର୍ଣ୍ଣ କଙ୍କଣ ଉପହାର ଦେଇଥିଲେ । ସେ ରାଜଦରବାରକୁ ଆସିବା ବେଳେ ତାକୁ ପିନ୍ଧି ଆସୁଥାନ୍ତି ' ଦିନେ ସେ ଦରବାରରୁ ଘରକୁ ଫେରି କଙ୍କଣ ହଳକ କାଢ଼ି ରଖି ସ୍ନାନ ପାଇଁ ଗଲେ । ତା'ପରେ ଆସି ଦେଖନ୍ତି ତ ହଳକରୁ ଗୋଟିଏ ଉଭେଇ ଯାଇଛି !

ସେ ବୁଝିଲେ ତାଙ୍କର ଜଣେ ସମ୍ପର୍କୀୟ ଶଳା ଶ୍ୟାମ ଆସି ଚଟାପଟ ଚାଲି ଯାଇଛି । ଶ୍ୟାମର ଚୋରି କରିବା ଅଭ୍ୟାସ ଥିଲା ବୋଲି ସେ ଜାଣିଥିଲେ । କିନ୍ତୁ ଶ୍ୟାମ ସରଳ ଓ ସତ୍ୟବାଦୀ ପ୍ରକୃତିର ଲୋକ—ଏକଥା ବି ସେ ଜାଣିଥିଲେ ।

ଆଚାର୍ଯ୍ୟେ ଶ୍ୟାମ ଘରକୁ ଯାଇ କହିଲେ, "ହଇରେ ଶ୍ୟାମ! ତୋ ଭଳି ବିବେକବାନ୍ ଲୋକ ଏପରି କଲୁ କିପରି ? ତୁ ଯିନା ପଟେ କଙ୍କଣ ଆଣିଥାନ୍ତୁ, ଦୁଇପଟ ଯାକ ନେଇ ଆସିଲୁ କିପରି ? ରାଜା ମୋତେ କେଡ଼େ ଶ୍ରଦ୍ଧାରେ ଦେଇଥିଲେ !"

"ଭଣେଇ ! ତମେ ଏଡ଼େ ମିଛୁଆ ? ମୁଁ ହଳକଯାକ କେତେବେଳେ ଆଣିଲି ? ହେଇତ—ପଟେ ମାତ୍ର ଆଣିଛି । ମୋର କ'ଣ ବିବେକ ନାହିଁ ?" ଶ୍ୟାମ ଉତ୍ତେଜିତ ହୋଇ କହିଲା । ଆଚାର୍ଯ୍ୟେ ସେ ପଟକ ଶ୍ୟାମ ହାତରୁ ଆଣି ହସି ହସି କହିଲେ, "ଓହୋ, ମୋର ଭୁଲ ହୋଇଗଲା ! ହଉ, ଯାଉଛି ।"





# ମନ୍ତ୍ରୀ - ପରୀକ୍ଷା

ପ୍ରତାପଗଡ଼ର ରାଜାଙ୍କର ପ୍ରଧାନମନ୍ତ୍ରୀ ଥିଲେ ଶିବନାଥ । ସେ ଯେପରି ବିଜ୍ଞ ଥିଲେ, ସେହିପରି ଧୀରସ୍ଥିର ଥିଲେ । ତାଙ୍କ ଉପରେ ରାଜାଙ୍କର ଅଗାଧ ବିଶ୍ୱାସ ଥିଲା । ଅନେକ ସଙ୍କଟପୂର୍ଣ୍ଣ ପରିସ୍ଥିତିରେ ରାଜା ତାଙ୍କ ପରାମର୍ଶ ଅନୁସାରେ କାମ କରି ସଙ୍କଟରୁ ଉଦ୍ଧାର ପାଇଥିଲେ ।

କିନ୍ତୁ ମହାମନ୍ତ୍ରୀ ଶିବନାଥ ଆକସ୍ମିକ ଭାବରେ ପରଲୋକଗମନ କଲେ । ରାଜା ବଡ଼ ବ୍ୟଥା ପାଇଲେ । ଶିବନାଥଙ୍କ ଭଳି ଜଣେ ପରାମର୍ଶଦାତା ପାଇବା ସହଜ ନଥିଲା । ଅଥଚ କାହାକୁ ହେଲେ ପ୍ରଧାନମନ୍ତ୍ରୀ ପଦରେ ନିଯୁକ୍ତ ନ କଲେ ଅନ୍ୟ ରାଜାମାନଙ୍କର ଧାରଣା ହେବ ଯେ ରାଜାଙ୍କର ଉପଯୁକ୍ତ ମନ୍ତ୍ରୀ ନାହାନ୍ତି !

ରାଜାଙ୍କ ଅମାତ୍ୟମାନଙ୍କ ଭିତରେ ବିଦ୍ୟା-ବୁଦ୍ଧିରେ ତିନିଜଣଙ୍କର ଖ୍ୟାତି ଥିଲା । ସେମାନେ ହେଲେ ବିଶାଳ, ପ୍ରଶାନ୍ତ ଓ ଶଙ୍କରଭଟ୍ଟ । ସେହି ତିନିଜଣଙ୍କ ଭିତରୁ କାହାକୁ ହେଲେ ମନ୍ତ୍ରୀ ପଦରେ ବରଣ କରିବା ନିମନ୍ତେ ରାଜା ନିଷ୍ପତ୍ତି କଲେ ।

ସେ ପ୍ରଥମ ଦିନ ବିଶାଳଙ୍କୁ ଡାକି କହିଲେ, "କାହାକୁ ମନ୍ତ୍ରୀ କରିବା, ସେ ପ୍ରଶ୍ନ ମୋତେ ବିବ୍ରତ କରୁଛି । ସେ ଯାହାହେଉ ଆମ ପଡ଼ୋଶୀ ରାଜା ଆମ ରାଜ୍ୟ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଥିବାର ସମ୍ବାଦ ମିଳୁଛି । କ'ଣ କରିବା କହିଲେ ?"

"ମହାରାଜ! ପଡ଼ୋଶୀ ରାଜାର ସୈନ୍ୟ ବାହିନୀ ଆମ ସୈନ୍ୟବାହିନୀଠାରୁ ବଡ଼, ଏକଥା ଆପଣ ଜାଣନ୍ତି । ତେଣୁ ତାଙ୍କ ସହ କୌଣସି କୂଟନୈତିକ ଚୁକ୍ତି କରି ଯୁଦ୍ଧ ଏଡ଼ାଇଯିବା ବିଜ୍ଞ କାମ ହେବ ।" ବିଶାଳ ମତ ଦେଲେ ।



ରାଜା ଗମ୍ଭୀର ଦେଖାଗଲେ । ଟିକିଏ ପରେ ସେ କହିଲେ, "ବିଶାଳ! ଶତ୍ରୁକୁ ଡରି ଚୁକ୍ତି ବା ସନ୍ଧି କରିବା ଆମ ପକ୍ଷରେ କ'ଣ ସମ୍ମାନର କଥା ହେବ?"

ବିଶାଳ ମୁଣ୍ଡ ହଲାଇ ଚୁପ୍ ରହିଲେ ।

ରାଜା ପୁଣି କହିଲେ, "ପଡ଼ୋଶୀ ରାଜ୍ୟ ଅପ୍ରସ୍ତୁତ ଥିବା ଅବସ୍ଥାରେ ଆମେ ହଠାତ୍ ତାକୁ ଆକ୍ରମଣ କରି କାବୁ କରିଦେଲେ କିପରି ହୁଅନ୍ତା?" ବିଶାଳ ଟିକିଏ ବି ଦ୍ୱିଧା ନକରି ସଙ୍ଗେ ସଙ୍ଗେ କହିଲେ, "ଏହା ଖୁବ୍ ଉତ୍ତମ ପ୍ରସ୍ତାବ, ମହାରାଜ । ତାହାହିଁ କରାଯାଉ ।"

ପରଦିନ ରାଜା ପ୍ରଶାନ୍ତଙ୍କୁ ଡକାଇଲେ ଓ ପୂର୍ବଭଳି ଭୂମିକା ପରେ କହିଲେ, "ଦେଖୁଛ ହଠାତ୍ ରାଜକୋଷ ଶୂନ୍ୟ ହୋଇ ଯାଉଛି । ସୈନ୍ୟ ଓ କର୍ମଚାରୀମାନଙ୍କୁ ନିୟମିତ ଦରମା କିପରି ଦେବ, ତାହାହିଁ ସମସ୍ୟା । କ'ଣ କରିବା କହିଲେ?"

ପ୍ରଶାନ୍ତ କହିଲେ, "ପ୍ରଜାଙ୍କ ଉପରେ ଗୋଟାଏ ନୂଆ କର ବସାଇ ଦିଆଯାଉ । ବଣିକମାନଙ୍କଠାରୁ ବର୍ତ୍ତମାନ ଯେତିକି ପରିମାଣରେ କର ଆଦାୟ କରାଯାଉଛି, ତାକୁ ବଢ଼ାଇ ଦିଆଯାଉ । ସମସ୍ୟାର ସମାଧାନ ହୋଇଯିବ ।"

ରାଜା ଗମ୍ଭୀର ଭାବରେ କିଛି ସମୟ ରହି ପଚାରିଲେ, "ସେଇଟା କ'ଣ ଉଚିତ ହେବ? ପ୍ରଜାମାନେ ଓ ବଣିକମାନେ ବିରକ୍ତ ହେବେ ନାହିଁ? ମୁଁ ଭାବୁଛି ସବୁ ବିଭାଗରେ ଖର୍ଚ୍ଚ କାଟି କଲେ ହୁଅନ୍ତା । ଆଉ ରାଜ୍ୟରେ ଥିବା ଖଣିଜ ସମ୍ପଦରୁ କିଛି ପଛା ଲଗାଇଲେ ବି ଭଲ ହେବ ।"

"ଖୁବ୍ ଭଲ ହେବ, ମହାରାଜ, ଖୁବ୍ ଭଲ ହେବ । ତାହାହିଁ କରାଯାଉ ।" କହିଲେ ପ୍ରଶାନ୍ତ ।

ତୃତୀୟ ଦିନ ରାଜା ଶଙ୍କର ଭଟ୍ଟଙ୍କୁ ଡାକି ଏକାପ୍ରକାର ଭୂମିକା ଦେଲେ ଓ କହିଲେ, "ଶୁଣିଲେଣି? ରାଜ୍ୟର ଦକ୍ଷିଣ ପ୍ରଗଣାରେ ଦୁର୍ଭିକ୍ଷ ପଡ଼ୁଛି । ଲୋକେ ଖାଇବା ବିନା ମରିବାକୁ ବସିଲେଣି । ଭାବୁଛି ସବୁ ଲୋକଙ୍କୁ ସେଠାରୁ ଉଠାଇ ଅନ୍ୟତ୍ର ଆଣି ଥଇଥାନ କରିଦେବା । କ'ଣ କହୁଛନ୍ତି?"

ଶଙ୍କର ଭଟ୍ଟ ମୁହୂର୍ତ୍ତେ ନୀରବ ରହି କହିଲେ, "ମହାରାଜ, ଆପଣ ଯେପରି ଉଦ୍‌ବିଗ୍ନ ଅନୁଭବ କରୁଛନ୍ତି, ତାହା ଯଥାର୍ଥ। କିନ୍ତୁ ଲୋକଙ୍କୁ ଅନ୍ୟ ସ୍ଥାନକୁ ଆଣି ଥଇଥାନ କରିବା ଅପେକ୍ଷା ଅନ୍ୟ ସ୍ଥାନରୁ ଖାଦ୍ୟଦ୍ରବ୍ୟ ନେଇ ସେମାନଙ୍କୁ ଯୋଗାଇ ଦେବା ଉଚିତ ହେବ। ସଙ୍ଗେ ସଙ୍ଗେ ଦୁର୍ଭିକ୍ଷର କାରଣ ନିରୂପଣ କରି ତାହାର ପ୍ରତୀକାର କରିବାକୁ ହେବ।"

ରାଜା ବିରକ୍ତି ପ୍ରକାଶ କରି କହିଲେ, "ଶଙ୍କର ଭଟ୍ଟ! ଆପଣ କ'ଣ ମୋଠୁଁ ବେଶି ଜାଣନ୍ତି?"

ନମ୍ର ଭାବରେ ଶଙ୍କର ଭଟ୍ଟ କହିଲେ, "ନା, ମହାରାଜ, ବେଶି ମୁଁ ଜାଣେ ନାହିଁ। ତେବେ ମୋ ବିବେକ ଅନୁସାରେ ଏହାହିଁ ଠିକ୍ ହେବ।"

"ଆପଣ ମୋ ଚିନ୍ତାର ବିରୁଦ୍ଧରେ ଯାଉଛନ୍ତି। ଭାବୁଥିଲି ଆଟଣଙ୍କୁ ମନ୍ତ୍ରୀ କରିବି ବୋଲି। କିନ୍ତୁ ଦେଖୁଛି ଆପଣଙ୍କ ସହ ମୋର ମତ ମେଳ ହେବ ନାହିଁ। ମନ୍ତ୍ରୀ ହେଲେ ଆପଣ ମୋ ସହ ଏକମତ ହେବାର ପ୍ରତିଶ୍ରୁତି ଦେଇ ପାରିବେ କି?" ରାଜା କଣ୍ଠସ୍ୱର ତୀକ୍ଷ୍ଣ କରି ପଚାରିଲେ।

"ନା ମହାରାଜ, ସେଭଳି ପ୍ରତିଶ୍ରୁତି ଦେଇ ପାରିବି ନାହିଁ। ତା'ଛଡ଼ା ଯେଉଁ ପଦ ଶିବନାଥ ଅଧିକାର କରିଥିଲେ, ସେ ପଦରେ ବସିବା ଭଳି ଯୋଗ୍ୟତା ମୋର ନାହିଁ।" ଶଙ୍କର ଭଟ୍ଟ କହିଲେ।



"ଆପଣ ଯାଇ ପାରନ୍ତି!" ରାଜା ଅଧୈର୍ଯ୍ୟ ସ୍ୱରରେ କହିଲେ । ଶଙ୍କର ଭଟ୍ଟ ରାଜାଙ୍କୁ ଅଭିବାଦନ ଜଣାଇ ବାହାରିଗଲେ ।

ପରଦିନ ରାଜା ନୂଆ ମନ୍ତ୍ରୀଙ୍କ ନାମ ଘୋଷଣା କରିବେ ବୋଲି ଜଣାଇ ଦିଆଗଲା । ଶଙ୍କର ଭଟ୍ଟଙ୍କ ଉପରେ ରାଜା ବିରକ୍ତ ହୋଇଛନ୍ତି ବୋଲି ପ୍ରଚାର ହୋଇଗଲା । ଶଙ୍କର ଭଟ୍ଟଙ୍କୁ ଅମାତ୍ୟ ପଦରୁ ହଟିଯିବାକୁ ପଡ଼ିପାରେ—ଏଭଳି ଜନରବ ମଧ୍ୟ ହେଲା ।

ପରଦିନ ଦରବାରରେ ବିପୁଳ ଜନସମାବେଶ ହେଲା । ଅବଶ୍ୟ ସମସ୍ତେ ଜାଣିଥାନ୍ତି ଯେ ବିଶାଳ ଓ ପ୍ରଶାନ୍ତ—ଏଇ ଦୁଇଜଣଙ୍କ ଭିତରୁ ଜଣେ ମନ୍ତ୍ରୀ ହେବେ । ସେ ଦୁହେଁ ମଧ୍ୟ ଏ ବିଷୟରେ ନିଶ୍ଚିନ୍ତ ଥିଲେ ।

ରାଜା ଯଥା ସମୟରେ ଦରବାରରେ ପହଞ୍ଚିଲେ ଓ ସମସ୍ତଙ୍କ ଅଭିବାଦନ ଗ୍ରହଣ କରିସାରି କହିଲେ, "ଆଜି ଆମ ନୂତନ ମନ୍ତ୍ରୀଙ୍କୁ ଆମେ ସ୍ୱାଗତ କରିବା । ଯିଏ ମନ୍ତ୍ରୀ ହେବ, ଯିଏ ନିଜ ଚିନ୍ତାଧାରା ଓ ମତରେ ଦୃଢ଼ ହେବା ଆବଶ୍ୟକ । ସବୁବେଳେ ମୋ କଥା ସମର୍ଥନ କଲେ ମୋର ଓ ରାଜ୍ୟର ସର୍ବନାଶ ହୋଇପାରେ । ମନ୍ତ୍ରୀ ନିଜ ସ୍ୱାର୍ଥ ପ୍ରତି ଦୃଷ୍ଟି ନ ଦେଇ ନିର୍ଭୀକ ହେବା ଦରକାର । ଶିବନାଥ ସେହିପରି ମନ୍ତ୍ରୀ ଥିଲେ । ତାଙ୍କ ପରେ ଜଣେ ମାତ୍ର ଅମାତ୍ୟ ସେଭଳି ଗୁଣର ଅଧିକାରୀ । ଯିଏ ହେଲେ ଶଙ୍କର ଭଟ୍ଟ ।"

ଶଙ୍କର ଭଟ୍ଟ ସେତେବେଳେ ବିମର୍ଷ ଭାବରେ ଗୋଟିଏ କୋଣରେ ବସିଥିଲେ । ରାଜାଙ୍କ ଅପ୍ରତ୍ୟାଶିତ ଘୋଷଣା ସମସ୍ତଙ୍କୁ ଚମକାଇ ଦେଲା । କିନ୍ତୁ ସବୁଠାରୁ ଅଧିକ ମାତ୍ରାରେ ଚମକି ଉଠିଲେ ଶଙ୍କର ଭଟ୍ଟ ।

ରାଜା ତାଙ୍କ ଆଡ଼କୁ ହସି ଅନାଇଲେ । ରାଜପୁରୋହିତ ତାଙ୍କୁ ଆଗକୁ ଆସିବାକୁ ଇଙ୍ଗିତ ଦେଲେ । ରାଜା ଓ ପୁରୋହିତ ତାଙ୍କୁ ଧରି ଶିବନାଥଙ୍କ ଆସନରେ ବସାଇ ଦେଲେ ।





# ଶୃଗାଳ ରାଜାର ଆକ୍ରମଣ

ଏକଦା ବୋଧିସତ୍ତ୍ୱ କାଶୀ ନଗରୀର ଗୋଟିଏ ବିଶିଷ୍ଟ ବିଦ୍ୱାନ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥାନ୍ତି । ଶିଶୁକାଳରୁ ତାଙ୍କ ପାଣ୍ଡିତ୍ୟ ଓ ବ୍ୟବହାରରେ ସମସ୍ତେ ମୁଗ୍ଧ ହେଉଥାନ୍ତି । ଯୁବକ ଅବସ୍ଥାରେ ସେ କାଶୀର ରାଜାଙ୍କ ଦୃଷ୍ଟି ଆକର୍ଷଣ କଲେ । କିଛିଦିନ ପରେ ରାଜା ତାଙ୍କୁ ନିଜ ପୁରୋହିତ କଲେ ।

ବୋଧିସତ୍ତ୍ୱ ଖଣ୍ଡିଏ ଦୁର୍ଲଭ ପୋଥିରୁ ଏପରି ଗୋଟିଏ ମନ୍ତ୍ର ପାଇଲେ, ଯାହା ଉଚ୍ଚାରଣ କରି ଜଣେ ସଙ୍ଗେ ସଙ୍ଗେ ଅନ୍ୟକୁ ବଶୀଭୂତ କରି ପାରିବ ।

ସେ ମନ୍ତ୍ର ବ୍ୟବହାର କରି ଲାଭବାନ ହେବାକୁ ବୋଧିସତ୍ତ୍ୱ ଇଚ୍ଛୁକ ନଥିଲେ । କିନ୍ତୁ ସେ ମନ୍ତ୍ରଟି ସଂସାରରୁ ଯେପରି ଲୁପ୍ତ ହୋଇ ନ ଯିବ, ସେଥିପାଇଁ ସେ ତାକୁ ମୁଖସ୍ଥ କରିବାକୁ ଠିକ୍ କଲେ ।

ଗୋଟିଏ ନିର୍ଜନ ସ୍ଥାନ ଦେଖି ସେ ଖଣ୍ଡିଏ ପଥର ଉପରେ ବସି ମନ୍ତ୍ରଟି ବାରମ୍ବାର ଉଚ୍ଚାରଣ କଲେ । ସୂର୍ଯ୍ୟାସ୍ତ ହେଲା । ସେ ଘରକୁ ଫେରିବା ପାଇଁ ଉଠି ଠିଆ ହେଲେ । ହଠାତ୍ ଗୋଟାଏ ବୁଦା ମୂଳରୁ ଶିଆଳଟାଏ ବାହାରି ପଡ଼ି ତାଙ୍କୁ କହିଲା, "ତୁମ ମନ୍ତ୍ର ଶୁଣି ଶୁଣି ମୁଁ ବି ତାହା ଶିଖି ଯାଇଛି । ଧନ୍ୟବାଦ!"

ଶୃଗାଳଟାଏ ସେଭଳି ଅମୂଲ୍ୟ ମନ୍ତ୍ର ଜାଣିବା ଉଚିତ ହେବ ନାହିଁ ବୋଲି ବୋଧିସତ୍ତ୍ୱ ବୁଝିଥିଲେ । କିନ୍ତୁ ସେ କରିବେ କ'ଣ ? ଶୃଗାଳକୁ ଖୋଜି ବାହାର କରିବାକୁ ସେ ଚେଷ୍ଟା କଲେ । କିନ୍ତୁ ଅନ୍ଧାରରେ ସେ କୁଆଡ଼େ ଲୁଚିଗଲା ।

ସେ ଶୃଗାଳର ରହସ୍ୟ ହେଲା, ସେ ପୂର୍ବ-ଜନ୍ମରେ ଜଣେ ବ୍ରାହ୍ମଣ ଥିଲା । ନାନା



ପାପାଚାର କରି ସେ ଶୃଗାଳ ଜନ୍ମ ପାଇଥିଲା । କିନ୍ତୁ ମଣିଷ ଭଳି ତା'ର ସ୍ମୃତିଶକ୍ତି ଥିଲା ।

ଶୃଗାଳକୁ ନପାଇ ବୋଧିସତ୍ତ୍ୱ ଘରକୁ ଫେରିଲେ ଓ ତା' କଥା ଭୁଲିଗଲେ ।

ଏଣେ ଶୃଗାଳ ସେହି ରାତିରେ ବଣ ଭିତରେ ବୁଲୁଥିବା ବେଳେ ତା' ନିଜଠାରୁ ଚାରି ପାଞ୍ଚଗୁଣ ବଡ଼ୁଆ ଗୋଟାଏ ଶୃଗାଳକୁ ଦେଖି ମନ୍ତ୍ରଟି ପଢ଼ିଲା । ସଙ୍ଗେ ସଙ୍ଗେ ସେ ବଡ଼ୁଆ ଶୃଗାଳ ତାକୁ ସଲାମ ବଜାଇଲା । ଏଥର ଶୃଗାଳ ବୁଝିଲା କି ସେ ଗୋଟାଏ ଅମୋଘ ଶକ୍ତି ଆୟତ୍ତ କରିଛି ।

ପରେ ପରେ ସେ ମନ୍ତ୍ର ପଢ଼ି ହାତୀଙ୍କୁ ବଶ କଲା । ଏହା ପରେ ବାଘ ସିଂହ ଭଳି ସମସ୍ତଙ୍କୁ ବଶ କରି ରଜା ହୋଇ ବସିଲା ।

ଏଣେ ଶୃଗାଳ-ରଜାର ଗର୍ବ କହିଲେ ନ ସରେ । ସକାଳେ ବାଘଟାଏ ଆସି ତା ଦେହହାତ ଚିପିଦିଏ । ସିଂହ ଆସି କରଯୋଡ଼ି କରି କହେ, "ମହାରାଜ, ଆଜି କି ପ୍ରକାର ମଣୋହି କରିବେ ?" ଶୃଗାଳ ଯାହା ଖାଇବାକୁ ଇଚ୍ଛା କରେ ତାହାର ବ୍ୟବସ୍ଥା ହୋଇଯାଏ । ବାଘମାନେ ଯାଇ ତାଜା ମାଂସ ଆଣି ଦିଅନ୍ତି । ବଣୁଆ ହାତୀମାନେ ଲୋକାଳୟ ଭିତରକୁ ଯାଇ କ୍ଷେତବାଡ଼ିର ଭଲ ଫଳମାନ ଚୋରାଇ ନେଇ ଆସନ୍ତି । ଶୃଗାଳ ସେସବୁ ଖାଇ ଆରାମରେ ରହେ । ନିଜର ବୁଦ୍ଧି ଓ ସାହସକୁ ସେ ପ୍ରଶଂସା କରେ ।

କ୍ରମେ ଶୃଗାଳ-ରଜା ବହୁତ ମୋଟା ହୋଇଗଲା । ତାକୁ ଦେଖିଲେ ସହଜରେ କେହି ଶୃଗାଳ ବୋଲି କହିବେ ନାହିଁ ।

ଶୃଗାଳର ମନ୍ତ୍ର କଥା କେହି ଜାଣି ନଥିଲେ । ତା'ର ବଶୀଭୂତ ହୋଇଥିବା ଜୀବମାନେ ଭାବୁଥିଲେ ସେ କୌଣସି ଦୈବୀ ଶକ୍ତି ପ୍ରଭାବରେ ରଜା ହୋଇଛି । ଅଥବା ସେ ଶୃଗାଳ-ବେଶୀ କୌଣସି ଗନ୍ଧର୍ବ ।

ଶୃଗାଳ ବଣରେ ପୂର୍ବରୁ ରଜା ରୂପେ ଗଣ୍ୟ ହେଉଥିବା ସିଂହକୁ ନିଜର ମନ୍ତ୍ରୀ ରୂପେ ନିଯୁକ୍ତ କଲା । ବାଘମାନେ ତା' ସେନାପତି ଓ ଦେହରକ୍ଷୀ ରୂପେ ନିଯୁକ୍ତ ହେଲେ । ଅନ୍ୟ

କେତେଜଣ ଗୃହନ୍ଥୁଙ୍କାର ଶୃଗାଳ ତାଙ୍କୁ କହିଲେ, "ରାଜାଧିରାଜ! ରାଣୀ ବିନା ସିଂହାସନ ଶୋଭା ପାଉନାହିଁ।" ସମସ୍ତେ ଲାଗିପଡ଼ି ସବୁଠାରୁ ସୁନ୍ଦରୀ ଶୃଗାଳ-କନ୍ୟାଟିଏ ଖୋଜି ବାହାର କଲେ ଓ ଶୃଗାଳ-ରାଜା ସହ ବିଭା ଦେଲେ।

ଦୁଇଗୋଟି ହାତୀ ପାଖକୁପାଖ ଯୋଡ଼ି ହୋଇ ଠିଆ ହେଉଥାନ୍ତି। ସେ ଦୁହିଁଙ୍କ ପିଠି ଉପରେ ଠିଆ ହେଉଥାଏ ସିଂହଟାଏ। ସେ ସିଂହ ଉପରେ ଶୃଗାଳ-ରାଜା ସବାର ହୋଇ ଏଣେତେଣେ ଯିବା ଆସିବା କରୁଥାଏ। "ପୃଥିବୀରେ କାହିଁ କେଉଁଠି ଏଡ଼େ ବଡ଼ ରାଜା କେବେ ଦେଖାଯାଉ ନଥିଲେ" ବୋଲି ଅନ୍ୟାନ୍ୟ ଜୀବମାନେ ମନ୍ତବ୍ୟ ଦେଉଥାନ୍ତି।

ଦିନେ ସେହି ସବୁ ମନ୍ତବ୍ୟ ଶୁଣି ଶୃଗାଳ-ରାଜା ମନେ ମନେ ଭାବିଲା, "ବାସ୍ତବିକ ମୁଁ ଏ ସାମାନ୍ୟ ବଣଟିରେ ରାଜା ହୋଇ ରହିଛି କାହିଁକି? ମୁଁ ତ ଇଚ୍ଛା କଲେ ସାରା ରାଜ୍ୟ ଅଧିକାର କରିନେଇ ପାରିବ!" ସେ ତତ୍କ୍ଷଣାତ୍ ଗୋଟାଏ ମଜବୁଦ ସୈନ୍ୟବାହିନୀ ପ୍ରସ୍ତୁତ କରିବାରେ ମନ ଦେଲା। ବଛା ବଛା ସିଂହମାନେ ବାହିନୀର ପୁରୋଭାଗରେ ରହିଲେ।

ଶୃଗାଳ ରାଜା ହାତୀ ଚଢ଼ି ସୈନ୍ୟବାହିନୀ ଧରି କାଶୀ ନଗରୀର ଦ୍ୱାର ଦେଶରେ ପହଞ୍ଚିଲା ଓ ପାଟିକରି ଦ୍ୱାରରକ୍ଷୀମାନଙ୍କୁ କହିଲା, "ତମ ରାଜାଙ୍କୁ କୁହ, ସେ ବିଳମ୍ବ ନକରି ମୋଠି ଆତ୍ମସମର୍ପଣ କରନ୍ତୁ। ନଚେତ୍ ମୁଁ ବଳ ଦ୍ୱାରା ନଗରୀ ଅଧିକାର କରିନେବ।"



ଦ୍ୱାରରକ୍ଷୀମାନେ ଭୟରେ ଥରହର ରାଜାଙ୍କୁ ଆସି ଏ ସମ୍ବାଦ ଦେଲେ । ରାଜା ମଧ୍ୟ ଆତଙ୍କ ଅନୁଭବ କଲେ । ବୋଧିସତ୍ତ୍ୱ ଆସି ରାଜାଙ୍କୁ କହିଲେ, "ଆପଣ ଆକ୍ରମଣକାରୀଙ୍କ ସହ ମୁକାବିଲା କରିବା ଦାୟିତ୍ୱ ମୋ ଉପରେ ଛାଡ଼ି ଦିଅନ୍ତୁ ।" ରାଜା ଆଶ୍ୱସ୍ତ ହେଲେ । ବୋଧିସତ୍ତ୍ୱ ଯାଇ ପ୍ରାଚୀର ଉପରେ ଠିଆ ହୋଇ ଶୃଗାଳ ରାଜାକୁ ପଚାରିଲେ, "ତମେ କିପରି ଏ କାମ କରିବାକୁ ସାହସ କରୁଛ? ତମେ କ'ଣ କେବେହେଲେ ଜିତି ପାରିବ?"

ଶୃଗାଳ ଅଟ୍ଟହାସ୍ୟ କରି କହିଲା, "ଶୁଣିବ ମୁଁ କ'ଣ କରିବି? ମୋ ସିଂହମାନେ ଏକା ସାଙ୍ଗରେ ଗର୍ଜନ କରି ମାଡ଼ିଯିବେ । ସେ ରଡ଼ି ଶୁଣିବା ମାତ୍ରେ ମଣିଷମାନେ ମୂର୍ଚ୍ଛା ଯିବେ ।"

ବୋଧିସତ୍ତ୍ୱ ଶୃଗାଳ ସହ କଥାବାର୍ତ୍ତା କରୁଥାନ୍ତି । ଏଣେ ତାଙ୍କ ନିର୍ଦ୍ଦେଶରେ ନଗରୀ-ବ୍ୟାପି ସମସ୍ତ ଲୋକଙ୍କୁ ନିଜ ନିଜ କାନ ବନ୍ଦ କରି ଘର ଭିତରେ ରହିବାକୁ କହି ଦିଆଗଲା ।

ତା'ପରେ ବୋଧିସତ୍ତ୍ୱ ଶୃଗାଳକୁ କହିଲେ, "ଆଚ୍ଛା ହେଉ, ତମେ ଯାହା କରୁଛ କର ।"

ଶୃଗାଳର ଆଦେଶରେ ଏକା ସାଙ୍ଗରେ ସବୁ ସିଂହ ରଡ଼ି ଛାଡ଼ିଲେ । ସେମାନେ ତାହା କରିବା ମାତ୍ରେ ଯେଉଁ ଦୁଇଟି ହାତୀ ଉପରେ ସିଂହଟିଏ ଓ ତା' ଉପରେ ଶୃଗାଳ ବସିଥିଲା, ସେ ହାତୀ ଦୁଇଟି ଚମକିପଡ଼ି ଦୌଡ଼ି ପଳାଇବାକୁ ଚେଷ୍ଟା କଲେ । ସେ ଦୁହିଁଙ୍କ ଉପରେ ଥିବା ସିଂହ ତଳକୁ ଖସି ପଡ଼ିଲା । ତା' ସଙ୍ଗେ ସଙ୍ଗେ ଶୃଗାଳ ମଧ୍ୟ ପଡ଼ିଗଲା । ହାତୀଙ୍କ ଦଳ ଚକଟାରେ ଅନେକ ଗୁଡ଼ିଏ ପଶୁ ମଲେ । ତାଙ୍କ ଭିତରେ ଥାଇ ଶୃଗାଳ ରଜା ବି ମଲା । ବାକି ପଶୁମାନେ ବଣ ଭିତରକୁ ପଳାଇଗଲେ ।

ଏହାପରେ ବୋଧିସତ୍ତ୍ୱଙ୍କ ନିର୍ଦ୍ଦେଶରେ ଲୋକେ ଯିଏ ଯାହା ଘରୁ ବାହାରି ଆସିଲେ । ଶୃଗାଳ-ରାଜାର ଆକ୍ରମଣରୁ ନଗରୀକୁ ରକ୍ଷା କରିଥିବା ହେତୁ ବୋଧିସତ୍ତ୍ୱଙ୍କ ପ୍ରତି ସମସ୍ତେ ଗଭୀର କୃତଜ୍ଞତା ପ୍ରକାଶ କଲେ ।





ଭାରତ-କାହାଣୀ

# ଶ୍ରେଷ୍ଠ ମୋଗଲ

ଆଗ୍ରାଠାରୁ ଛତିଶ କିଲୋମିଟର ଦୂରବର୍ତ୍ତୀ ସିକ୍ରି ନାମରେ ଏକ ମନୋରମ ସ୍ଥାନ ଥିଲା । ସେଠାରେ ଗୋଟାଏ ପାହାଡ଼ ଉପରେ ଶେଖ୍ ସେଲିମ୍ ଚିସ୍ତି ନାମରେ ଜଣେ ମୁସଲମାନ୍ ସାଧୁ ଥିଲେ । ଆକବର୍ ତାଙ୍କୁ ବହୁତ ଶ୍ରଦ୍ଧା ଭକ୍ତି କରୁଥିଲେ ।

୧୫୬୯ ରେ ଆକବରଙ୍କ ରାଜପୁତ୍ ରାଣୀ ଗୋଟିଏ ପୁତ୍ର ସନ୍ତାନ ଜନ୍ମ ଦେଲେ । ସାଧୁ ସେଲିମ୍ ଚିସ୍ତିଙ୍କ ଆଶୀର୍ବାଦରୁ ସେ ସନ୍ତାନଟି ହୋଇଛି ବୋଲି ବିଶ୍ୱାସ କରି ଆକବର୍ ତା' ନାମ ରଖିଲେ ସେଲିମ୍ । ପରବର୍ତ୍ତୀ କାଳରେ ଏହି ପୁତ୍ର ଜାହାଙ୍ଗୀର୍ ନାମରେ ଆକବରଙ୍କ ଉତ୍ତରାଧିକାରୀ ହୋଇଥିଲେ ।





ଶେଖ୍ ସାଲିମ ଚିସ୍ତିଙ୍କ ସମ୍ମାନରେ ଆକବର ସିକ୍ରି ଠାରେ ଗୋଟାଏ ସୁନ୍ଦର ଓ ମଜବୁଦ୍ ଦୁର୍ଗ ନିର୍ମାଣ କଲେ । ସିକ୍ରିକୁହିଁ ସେ ନିଜର ରାଜଧାନୀ କଲେ । ଏହିଠାରୁ ସେ ଗୁଜରାଟ ଅଭିମୁଖେ ଅଭିଯାନ କରିଥିଲେ ଓ ଜୟଲାଭ କରିଥିଲେ । ତେଣୁ ସିକ୍ରିର ଅନ୍ୟନାମ ହେଲା ଫତେପୁର ବା ବିଜୟପୁରୀ ।



୧୫୯୩ ମସିହାରେ ଆକ୍‌ବର୍ ଆହ୍‌ମଦନଗର ଅଭିମୁଖେ ସାନପୁଅ ମୁରାଦଙ୍କ ନେତୃତ୍ୱରେ ଗୋଟିଏ ବିଶାଳ ସୈନ୍ୟବାହିନୀ ପଠାଇଲେ । ସେଠାକାର ରାଜା ସଦ୍ୟ ମରି-ଯାଇଥାନ୍ତି । ରାଜାଙ୍କ ଭଉଣୀ, ବିଜାପୁରର ବିଧବା ରାଣୀ ଚାନ୍ଦ୍‌ବିବି ମୋଗଲ ସୈନ୍ୟବାହିନୀର ଗତି ପ୍ରତିରୋଧ କଲେ ।

କିନ୍ତୁ ବହୁ ଚେଷ୍ଟା ଓ ସାହସର ପରାକାଷ୍ଠା ସତ୍ତ୍ୱେ ସେ ବୁଝିଲେ ଯେ ପ୍ରବଳ ଶତ୍ରୁ କବଳରୁ ରାଜ୍ୟ ରକ୍ଷା ସମ୍ଭବପର ନୁହେଁ । ସେ ଦୂତ ଦ୍ୱାରା ଖବର ପଠାଇଲେ କି ରାଜ୍ୟର ବେରାର ନାମକ ଅଂଶ ନେଇ ମୋଗଲମାନେ ଚାଲିଯାନ୍ତୁ । ଆହ୍‌ମଦନଗରରେ ଶାନ୍ତି ଫେର ଆସୁ ।





ମୋଗଲମାନେ ଏ ସର୍ତ୍ତରେ ରାଜି ହୋଇ ଫେରିଗଲେ । କିନ୍ତୁ ଆହମଦ-ନଗରର କେତେଜଣ ଅମାତ୍ୟ ଚାନ୍ଦ୍‌ବିବିଙ୍କ ଦୂରଦର୍ଶିତା ବୁଝି-ପାରିଲେ ନାହିଁ । ସେମାନେ ଚାନ୍ଦବିବିଙ୍କୁ ହତ୍ୟା କଲେ । ଫଳ ହେଲା, ମୋଗଲମାନେ ପୁଣି ମାଡି ଆସିଲେ ଓ ପୁରା ରାଜ୍ୟ ଦଖଲ କରିନେଲେ ।

ଆକବର କ୍ରମେ ବ୍ୟାପକ ସାମ୍ରାଜ୍ୟ ଗଠନ କଲେ । ସେ ଖାଲି ଆକ୍ରମଣ-କାରୀ ନଥିଲେ, ଥିଲେ ଜଣେ ସୁଦକ୍ଷ ଶାସକ । ତାଙ୍କର ଜଣେ ମନ୍ତ୍ରୀ ଆବୁଲ ଫଜଲ ତାଙ୍କ ଶାସନର ବିବରଣୀ ଲେଖି ଯାଇଛନ୍ତି । ତାହା ଆଇନ-ଇ-ଆକବରୀ ନାମରେ ଖ୍ୟାତ ।





ବିଖ୍ୟାତ ସଙ୍ଗୀତଜ୍ଞ ତାନସେନଙ୍କର ପୃଷ୍ଠପୋଷକ ଥିଲେ ଆକବର । ଆକବରଙ୍କର ଅନ୍ୟାନ୍ୟ ଗୁଣୀ ସଭାସଦ୍‌ବର୍ଗଙ୍କ ମଧ୍ୟରେ ଥିଲେ ଚତୁର ଓ ବିଜ୍ଞ ମନ୍ତ୍ରୀ ରାଜା ବୀରବଲ, କବି ଫଇଜି, ଏବଂ ଅର୍ଥନୀତିବିଦ୍ ଟୋଡ଼ର-ମଲ୍ଲ ଯିଏ କି ସାମ୍ରାଜ୍ୟ ବ୍ୟାପି ଭୂ ସଂସ୍କାର କରିଥିଲେ ।

ଆକବର ଦେଖିଲେ ଧର୍ମ ଲୋକଙ୍କ ଭିତରେ ଗୋଷ୍ଠିବାଦ ସୃଷ୍ଟି କରୁଛି । ସେ ଦିନ-ଇ-ଇଲାହି ନାମକ ନୂତନ ଧର୍ମ ପ୍ରଚଳନ କଲେ । ହିନ୍ଦୁ ଧର୍ମ, ଇସଲାମ ଏବଂ ଅନ୍ୟାନ୍ୟ ଧର୍ମାଦର୍ଶରୁ ନୀତିମାନ ଗ୍ରହଣ କରି ସେ ଏହି ଧର୍ମ ପ୍ରସ୍ତୁତ କରିଥିଲେ । ତେବେ ଏହା ଚାଲିଲା ନାହିଁ ।





ଏତେ ବଡ଼ ସମ୍ରାଟ ହେବା ସତ୍ତ୍ୱେ
ଆକବରଙ୍କ ଜୀବନରେ ବହୁତ ଦୁଃଖ
ଥିଲା । ଉତ୍ତର-ପଶ୍ଚିମ ସୀମାନ୍ତରେ
ବୀରବଲ ମଲେ । ଆକବରଙ୍କ ପ୍ରିୟ
ବନ୍ଧୁ ଆବୁଲ ଫଜଲଙ୍କୁ ଯୁବରାଜ
ସେଲିମ ଚକ୍ରାନ୍ତ କରି ହତ୍ୟା କଲେ ।
ସେଲିମ ଅତ୍ୟନ୍ତ ଅବାଧ ଓ ସ୍ୱାର୍ଥପର
ହୋଇପାଇଥିଲେ । ଏସବୁ ଆକ-
ବରଙ୍କୁ ବିମର୍ଷ କରିଥାଏ ।

ଜନ ନିଉବେରି ନାମକ ଜଣେ
ଭଦ୍ରଲୋକଙ୍କ ନେତୃତ୍ୱରେ ଦଳେ
ଇଂରେଜ ଆସି ଫତେପୁର ସିକ୍ରିଠାରେ
ଆକବରଙ୍କୁ ସାକ୍ଷାତ୍ କଲେ । ସେମାନେ
ଇଂଲଣ୍ଡର ରାଣୀ ପ୍ରଥମ ଏଲିଜା-
ବେଥ୍‌ଙ୍କଠାରୁ ଚିଠି ଧରି ଆସିଥାନ୍ତି ।
ଭାରତକୁ ତାହାହିଁ ଇଂରେଜ ମାନଙ୍କର
ପ୍ରଥମ ବିଧିବଦ୍ଧ ଆଗମନ ।





ଆକବରଙ୍କ ପ୍ରିୟ ସ୍ଥାନ ଫତେପୁର
ସିକ୍ରିରେ ଜୀବନ ଧାରଣ କ୍ରମେ
କଷ୍ଟସାଧ୍ୟ ହେଲା । ପାଣିର ଅଭାବ
ଥିଲା ଏହାର ମୁଖ୍ୟ କାରଣ । ଆକବର
ସେ ମନୋରମ ଦୁର୍ଗ ପଛରେ ପକାଇ
ଚାଲିଗଲେ । ଯୁବରାଜ ସେଲିମଙ୍କ
ବ୍ୟବହାର ତେଣେ ତାଙ୍କୁ ଭୀଷଣ
ବ୍ୟଥିତ କରୁଥାଏ । ୧୬୦୫ ରେ ସେ
ପ୍ରାଣ ତ୍ୟାଗ କଲେ । ମୋଗଲ
ମାନଙ୍କ ଭିତରେ ସେ ଥିଲେ ଶ୍ରେଷ୍ଠ ।



# ଶେଷ ରକ୍ଷା

ବାଗଦାଦ୍‌ର ସୁଲତାନ ବୃଦ୍ଧ ହୋଇ ଯାଇଥିଲେ । ତେବେ ଯୁବରାଜ ଥିଲେ ଜଣେ ଯୋଗ୍ୟ ଓ ବିଚକ୍ଷଣ ରାଜପୁତ୍ର । ସୁଲତାନ୍ ତାଙ୍କୁ ସିଂହାସନରେ ବସାଇବାକୁ ସ୍ଥିର କଲେ ।

କିନ୍ତୁ ଯୁବରାଜ ସୁଲତାନ୍‌ଙ୍କ ପ୍ରସ୍ତାବ ଶୁଣି କହିଲେ, "ବାପା! ରାଜ୍ୟର ଶାସନ ଭାର ହାତକୁ ନେବା ପୂର୍ବରୁ ଥରେ ମୁଁ ଦେଶ ବିଦେଶ ଭ୍ରମଣ କରିବାକୁ ଚାହେଁ । ତାହାଦ୍ୱାରା ମୋର ଅଭିଜ୍ଞତା ହେବ ।"

"ବେଶ୍, ତୁ ଯଦି ସେପରି କରିବାକୁ ଚାହୁଁ, ତେବେ ମୋର ଆପତ୍ତି ନାହିଁ । ଏକା ଦୂର ଦେଶରେ ବୁଲାବୁଲି କରିବା ନିରାପଦ ନୁହେଁ । ତୋ ସାଥିରେ ଉଜୀର ଯା'ଆନ୍ତୁ । କେତେଜଣ ଦେହରକ୍ଷୀ ମଧ୍ୟ ତମ୍ବୁ ଓ ଅନ୍ୟାନ୍ୟ ଜିନିଷପତ୍ର ଧରି ଯିବେ । ତେବେ ମନେରଖ, ବିପଦ ବେଳେ ଯଦି ଧନବଳ ଜନବଳ କିଛି କାମ ଦିଏନାହିଁ, ଏକମାତ୍ର ଭଗବାନହିଁ ସହାୟ ହୋଇ ପାରନ୍ତି!" ସୁଲତାନ୍ କହିଲେ ।

ସୁଲତାନ୍‌ଙ୍କଠାରୁ ବିଦାୟ ନେଇ ଯୁବରାଜ ବାହାରିଗଲେ । ଦେଶ ବିଦେଶ ବୁଲାବୁଲି କରି ଅନେକ ଚିତ୍ତାକର୍ଷକ ଜିନିଷ ଦେଖିଲେ ଏବଂ ଶେଷରେ ସନ୍ତୁଷ୍ଟ ହୋଇ ବାଗ୍‌ଦାଦ୍ ଅଭିମୁଖେ ଫେରିବାକୁ ଲାଗିଲେ ।

ଫେରିବା ବେଳେ ଉଜୀର୍ ତାଙ୍କୁ ଗୋଟାଏ ନୂଆ ଅଞ୍ଚଳ ଭିତରଦେଇ ନେଇଗଲେ । ସେମାନେ ଅତ୍ୟନ୍ତ ମନୋରମ ଏକ ଅଞ୍ଚଳରେ ପହଞ୍ଚିଲେ । ଚାରିଦିଗରେ ପାହାଡ଼, ଝରଣା ଓ ଫଳଫୁଲଭରା ଗଛଲତା । ଉଜୀର୍‌ଙ୍କ ପ୍ରସ୍ତାବ ଅନୁସାରେ ଯୁବରାଜ ସେଠାରେ ପୁଣି ଦିନଟିଏ ବିଶ୍ରାମ କରିବାକୁ ସ୍ଥିର କଲେ ।



ଉପରର୍ଓଲ ଉଜୀର କହିଲେ, "ଯୁବରାଜ! ଆପଣ ଗୋଟାଏ ଅଦ୍ଭୁତ ପ୍ରକାର ହରିଣ ଦେଖିବେ?" ଯୁବରାଜଙ୍କର ହରିଣ ପ୍ରତି ବଡ଼ ଆକର୍ଷଣ ଥିଲା। ବାଗ୍‌ଦାଦ୍‌ରେ ସେ ନିଜ ଉଦ୍ୟାନରେ ଅନେକ ଧରଣର ହରିଣ ରଖିଥିଲେ। ସେ କହିଲେ, "ହରିଣ କ'ଣ ଆଉରି ଦେଖିବାକୁ ବାକି ଅଛି?"

"ହଜୁର୍, ଏପରି ହରିଣ ପୃଥିବୀରେ ଆଉ କେଉଁଠି ହେଲେ ନାହାନ୍ତି। ଏହାର ଦେହରେ ଛପମାନ ସୁନାର ନକ୍ଷତ୍ର ଭଳି ଝଟକୁଥାଏ। ଏ ହରିଣ ଦୌଡ଼ିଲେ ତା' ଖୁରାରୁ ଅଗ୍ନି ସ୍ଫୁଲିଙ୍ଗ ବାହାରେ।" ଉଜୀର କହିଲେ।

ଯୁବରାଜ ପ୍ରବଳ ଆଗ୍ରହରେ ହରିଣ ଦେଖିବାକୁ ବାହାରିଲେ। ସବୁଠୁ ସବୁ ଦୂରରେ ଗୋଟିଏ ଝରଣା ପାଖରେ ସେପରି ହରିଣଟିଏ ତାଙ୍କ ଦୃଷ୍ଟିଗୋଚର ହେଲା।

ସେ ତାକୁ ଲକ୍ଷ୍ୟ କରି କହିଲେ, "ଏ ହରିଣ ଏଠାରେ ନିର୍ଜନ ପ୍ରଦେଶରେ ରହି ଲାଭ ନାହିଁ। ଇଏ ମୋ ଉଦ୍ୟାନରେ ରହିବାର ଯୋଗ୍ୟ।" ଏହା କହି ଯୁବରାଜ ଘୋଡ଼ା ଝପଟାଇ ହରିଣ ଧରିବାକୁ ଅଗ୍ରସର ହେଲେ।

ପଛରେ ଠିଆ ହୋଇଥିବା ଉଜୀରଙ୍କ ମୁହଁରେ ଯେ ସୈତାନୀ ହସ ଫୁଟି ଉଠିଲା, ତାହା ସେ ଦେଖି ପାରିଲେ ନାହିଁ।

ଯୁବରାଜ ଯେତିକି ଯେତିକି ଅଗ୍ରସର ହେଲେ, ହରିଣ ସେତିକି ସେତିକି ଦୂରକୁ ପଳାଇବାକୁ ଲାଗିଲା। ଯୁବରାଜ ହାଲିଆ ହୋଇଯାଇ ପଛକୁ ଫେରି ଚାହିଁଲେ। କିନ୍ତୁ ଉଜୀରଙ୍କୁ ଦେଖିଲେ ନାହିଁ। ସେ ଧୀରେ ଧୀରେ ଘୋଡ଼ା ଚଲାଇ ତମ୍ବୁକୁ ଫେରିବା ପାଇଁ ବାଟ ଠଉରାଇବାକୁ ଚେଷ୍ଟା କରୁଛନ୍ତି, ଗୋଟାଏ ଭଙ୍ଗା ଅଟ୍ଟାଳିକା ତାଙ୍କ ଦୃଷ୍ଟି-ଗୋଚର ହେଲା। ବଣ ଭିତରେ କୋଠା କିଏ ତିଆରି କରିଥିଲା ସେକଥା ସେ ଭାବୁଛନ୍ତି, ତାକୁ ଆଉଜି ଜଣେ ସୁନ୍ଦରୀ ତରୁଣୀ ବସିଥିବାର ସେ ଦେଖିଲେ। ତରୁଣୀ କାନ୍ଦୁଥିଲା।

"ତମେ କିଏ? ଏ ନିର୍ଜନ ସ୍ଥାନକୁ କପରି ଆସିଲ?" ଯୁବରାଜ ପଚାରିଲେ।



ମୁଁ ଇରାନ୍‌ର ରାଜକନ୍ୟା । ଦିନେ ମୋ ଦାସୀମାନଙ୍କ ସହ ନଦୀକୁ ସ୍ନାନ କରିବାକୁ ଯାଉଥିଲି, ହଠାତ୍ ଝଡ଼ ଆସିଲା । ଗୋଟାଏ ଦୈତ୍ୟ ମେଘମାଳ ଭିତରୁ ଝାମ୍ପି ଆସି ମୋତେ ଉଠାଇନେଇ ଉଡ଼ି ପଳାଇବାକୁ ଲାଗିଲା । ମୁହୂର୍ତ୍ତକ ପରେ ବଜ୍ରାଘାତରେ ଦୈତ୍ୟ ମରି ତଳେ ପଡ଼ିଗଲା । ମୁଁ ଖସି ଆସି ଏଇଠି ପଡ଼ିଲି !" ତରୁଣୀ କହିଲା ।

"ଆଶ୍ଚର୍ଯ୍ୟ! ମୁଁ ଗୋଟାଏ ଯାଦୁକରୀ ଅଞ୍ଚଳକୁ ପଶି ଆସିଛି ଦେଖୁଛି! ଏଠି ସୁନାର ହରିଣ ଆଖିରେ ପଡ଼େ, ବଣ ଭିତରେ କୋଠା ଦେଖାଯାଏ, ପୁଣି ଦୈତ୍ୟ କବଳରୁ ଖସି ଆସି ରାଜକୁମାରୀ ବସିଥିବାର ଦେଖାଯାଏ !"

ତରୁଣୀ ସେଠାରେ ନୀରବ ରହିବାର ଦେଖି ଯୁବରାଜ ପୁଣି କହିଲେ, "ତୁମେ ମୋ ସହ ଚାଲ । ତମ ବାପାମା'ଙ୍କ ପାଖରେ ତମକୁ ପହଞ୍ଚାଇ ଦେବାପାଇଁ ଯଥାସାଧ୍ୟ ଚେଷ୍ଟା କରିବ ।"

ତରୁଣୀ ରାଜି ହୋଇ ଯୁବରାଜଙ୍କ ପଛରେ ତାଙ୍କ ଘୋଡ଼ାରେ ବସିଲା ।

ଯୁବରାଜ କିଛିବାଟ ଯାଇଛନ୍ତି, ପଛରୁ ବିକଟ ହସ ଶୁଭିଲା! ସେ ମୁହଁ ବୁଲାଇ ଯାହା ଦେଖିଲେ, ସେଥିରେ ତାଙ୍କ କଲିଜା କମ୍ପି ଉଠିଲା । ସେ ସୁନ୍ଦରୀ ତରୁଣୀ ବଦଳରେ ବସିଥିଲା ଗୋଟାଏ ପିଶାଚିନୀ ।

"ତମ ଭଳି ସାହସୀ ରାଜପୁତ୍ର ଏମିତି ଆତଙ୍କିତ ହେଉଛ କାହିଁକି ?" ପିଶାଚିନୀ ମଜାକରି ପଚାରିଲା ।

ଯୁବରାଜ କିଛି କହିଲେ ନାହିଁ ।

"ତମ ଦେହରକ୍ଷୀମାନେ ତମକୁ ରକ୍ଷା କରିପାରିବେ ନାହିଁ ?" ପିଶାଚିନୀ ପଚାରିଲା ।

"ନା!" ଯୁବରାଜ ଦୀର୍ଘନିଃଶ୍ୱାସ ଛାଡ଼ିଲେ ।

"ତମ ସମ୍ମାନ ଓ ଧନସମ୍ପଦ ?" ପିଶାଚିନୀ ପୁଣି ପଚାରିଲା ।

"କେହି ରକ୍ଷା କରି ପାରିବେ ନାହିଁ ।" ଯୁବରାଜ ହତାଶ କଣ୍ଠରେ କହିଲେ ।

"ବାସ୍ତବିକ, ତମ ସାଙ୍ଗେ ସାଙ୍ଗେ ଥିବା ଉଜିର ଯେତେବେଳେ ତମକୁ ମାରିବା ପାଇଁ

ମୋ କବଳକୁ ପଠାଇଦେଲେ, ସେତେବେଳେ ଆଉ କିଏ ବା କିପରି ତମକୁ ରକ୍ଷା କରିବ ?" ପିଶାଚିନୀ କହିଲା ।

"ଉଜୀର ଏପରି କଲେ ?" ବିସ୍ମୟରେ ପଚାରିଲେ ଯୁବରାଜ ।

"ହଁ । ତମ ପିତା ବୃଦ୍ଧ ଓ ଅସୁସ୍ଥ । ତାଙ୍କୁ ମାରିବା ସହଜ । ତମକୁ ବାଟରେ ମାରିଦେଇ ଗଲେ ଉଜୀରହିଁ ସୁଲତାନ୍ ହେବେ । ଜଣେ ମଂନ୍ତ୍ରବିଦ୍ ସାହାଯ୍ୟରେ ସେ ତମକୁ ମୋ ପାଖକୁ ପଠାଇଛନ୍ତି । ପ୍ରଥମେ ହରିଣ ରୂପେ ଓ ପରେ ତରୁଣୀ ରୂପେ ମୁଁ ତମକୁ ଠକି ନେଇ ଆସିଛି ।" ପିଶାଚିନୀ ଆଉ ଥରେ ଅଟ୍ଟହାସ୍ୟ କରି ପୁଣି କହିଲା, "ଯେତେବେଳେ ଜନବଳ, ଧନବଳ, ପ୍ରଭାବ ପ୍ରତିପତ୍ତି କିଛି ମଣିଷକୁ ରକ୍ଷା କରିପାରେ ନାହିଁ, ସେତେବେଳେ ତା'ର ସହାୟତା କଲା ଭଳି କ'ଣ କିଛି ନଥାଏ ?"

ହଠାତ୍ ଯୁବରାଜଙ୍କର ମନେ ପଡ଼ିଗଲା ତାଙ୍କ ପିତାଙ୍କ ଉପଦେଶ । ସେ ଗମ୍ଭୀର ଭାବରେ କହିଲେ, "ଥାଏ, ନିଶ୍ଚୟ ଥାଏ । ତାହା ଭଗବାନଙ୍କ କରୁଣା!" ସେ ଏକଥା କହିବା ମାତ୍ରେ ପିଶାଚିନୀ ତଳକୁ ଖସି ପଡ଼ି ଜଳି ପାଉଁଶ ହୋଇଗଲା । ଯୁବରାଜ ସ୍ତମ୍ଭୀଭୂତ ହୋଇ ଭାବିଲେ, "ଏ ପିଶାଚିନୀର ଚରିତ୍ର କେଡ଼େ ବିଚିତ୍ର! ମୋତେ ମାରିବା ପାଇଁ ଉଦ୍ଦିଷ୍ଟ ହୋଇ ମଧ୍ୟ କିପରି ପ୍ରଶ୍ନ ପରେ ପ୍ରଶ୍ନ ପଚାରି ମୁଁ ଯାହା ଭୁଲି ଯାଇଥିଲି ତାହା ମନେ ପକାଇ ଦେଲା । ନିଜେ ଜଳିଯାଇ ମୋତେ ରକ୍ଷା କଲା !"

ସେତେବେଳକୁ ରାତି ପାହି ଆସିଲାଣି । ସେ ଦୂରରେ ନିଜର ତମ୍ବୁ ଦେଖି ପାରିଲେ । ଉଜୀର ଯେମିତି ସେ ଆସିବାର ଦେଖିଛନ୍ତି, ସେମିତି ତମ୍ବୁ ପଛପଟ ଦ୍ୱାରଦେଇ ପଳାଇ ଗଲେ । ଆଉ ତାଙ୍କ ଦେଖା ମିଳିଲା ନାହିଁ । ବହୁ ବିଚିତ୍ର ଅଭିଜ୍ଞତା ଧରି ଯୁବରାଜ ବାଗଦାଦ ପ୍ରତ୍ୟାବର୍ତ୍ତନ କଲେ ।





# ସାଧୁର କର୍ତ୍ତବ୍ୟ

ଜଣେ ସାଧୁ ଥା'ନ୍ତି । ତାଙ୍କ ନାମ ନିତ୍ୟାନନ୍ଦ ।

ସେ ଥରେ ତୀର୍ଥ ବୁଲି ବୁଲି କୋମଳପୁର ନାମକ ଗ୍ରାମରେ ପହଞ୍ଚିଲେ । ସମୟ ଦ୍ୱିପ୍ରହର । ସାଧୁଙ୍କ କଣ୍ଠ ଶୋଷରେ ଫାଟି ଯାଉଛି । ସେ ଗୋଟିଏ ଘରେ ପହଞ୍ଚି କିଛି ପାଣି ପିଇବାକୁ ମାଗିଲେ । ଗୃହକର୍ତ୍ତୀ ଗୋଟିଏ ଲୋଟାରେ ପାଣି ଭର୍ତ୍ତିକରି ଆଣି ଦେଲେ । ସେତିକି ତାଙ୍କ ଶୋଷ ପାଇଁ ଯଥେଷ୍ଟ ହେଲନାହିଁ; ସେ ପୁଣି କିଛି ପାଣି ମାଗି ପିଇଲେ । ପାଣି ତୃପ୍ତିର ସହିତ ପିଇସାରି ମହିଳାଙ୍କୁ ଆଶିର୍ବାଦ କରି ସାଧୁ ଗ୍ରାମ ପାଖରେ ଥିବା ପୋଖରୀ କୂଳର ଅଶ୍ୱତ୍ଥ ଗଛର ଛାଇରେ ଯାଇ ବିଶ୍ରାମ କଲେ । ସେ ଦେଖିଲେ ବିରାଟ ପୁଷ୍କରିଣୀଟି ଶୁଖିଯାଇ ତା'ର କାଦୁଅ ଶୁଖି ଫାଟିକରି ରହିଛି । ଗଛରେ ବହୁତ କମ୍ ଜୀବନ୍ତ ପତ୍ର । ଅଧିକାଂଶ ପତ୍ର ଶୁଖିଲା ।

ସେଆଡ଼କୁ ସେ ଆଉ ବିଶେଷ ନଜର ଦେଲେନାହିଁ, ଏଣେ ପେଟ ଭୋକରେ ଜଳୁଛି । ଭାବିଲେ କେହି ଯଦି ଗ୍ରାମବାସୀ ଦୟାକରି ତାଙ୍କୁ ଡ଼ାକି ଭୋଜନ କରାଏ ତ ଭଲ । ରାତି ହେଲା । କେହିହେଲେ ତାଙ୍କୁ ଡ଼ାକିଲେ ନାହିଁ ।

ଯିବା ବାଟରେ ଭାବୁଥା'ନ୍ତି, "କ'ଣ ଏ ଯୁଗ ହେଲା! ସାଧୁସନ୍ଥଙ୍କୁ କେହି ଆଦର ସମ୍ମାନ କରୁ ନାହାନ୍ତି । ମନେ ହେଉଛି ସମସ୍ତେ ନିଜ ସ୍ୱାର୍ଥ ନେଇ ବ୍ୟସ୍ତ । ପାପ ବଢ଼ି ଯାଉଛି । ସେଥିପାଇଁ ବର୍ଷା ନ ହୋଇ ପୋଖରୀ ସବୁ ଶୁଖି ଯାଉଛି । ପୂର୍ବରୁ ଏଇ ଗାଁରେ ସେ ପହଞ୍ଚିବା ମାତ୍ରେ ଲୋକମାନେ ଘେରି ଯାଉଥିଲେ ଓ ନିଜ ନିଜ ଘରକୁ ନିମନ୍ତ୍ରଣ କରୁଥିଲେ । ଆଉ ଏଥର ଥରେ କେହି ଚାହିଁଲେ ବି ନାହିଁ । ଠିକ୍ ଅଛି । ମୁଁ ସାଧୁଲୋକ । ମୋର ସେମାନଙ୍କ

ସୁରେନ୍ଦ୍ର



ପ୍ରତି କୌଣସି ବିକାର ଆସିବା ଉଚିତ୍ ନୁହେଁ । ଭଗବାନ୍ ସେମାନଙ୍କର ମଙ୍ଗଳ କରନ୍ତୁ ।"

ରାସ୍ତାରେ ଅନ୍ୟ ଜଣେ ସାଧୁ ଚିଦାନନ୍ଦଙ୍କ ସହିତ ନିତ୍ୟାନନ୍ଦଙ୍କର ଭେଟ ହେଲା । ଚିଦାନନ୍ଦ ସେତେବେଳେ କୋମଳପୁର ଯାଉଥା'ନ୍ତି । ତେଣୁ ନିତ୍ୟାନନ୍ଦ ତାଙ୍କୁ କହିଲେ, "ଏବେ ସେ ଗାଁର ଲୋକେ ସାଧୁମାନଙ୍କୁ କୌଣସି ଆଦର ସତ୍କାର କରୁ ନାହାନ୍ତି । ଆପଣଙ୍କୁ ଟିକିଏ କଷ୍ଟ ସହିବାକୁ ହୁଏତ ପଡ଼ିପାରେ ।"

ସାଧୁ ଚିଦାନନ୍ଦ ତାଙ୍କ କଥା ଦ୍ୱାରା ବିଶେଷ ପ୍ରଭାବିତ ନ ହୋଇ କୋମଳପୁର ଗଲେ ।

କିଛିଦିନ ପରେ ହଠାତ୍ ଦୁଇ ସାଧୁଙ୍କର ଭେଟ ହେଲା ଗୋଟିଏ ପୋଖରୀ କୂଳରେ । ଦୁହେଁ ପ୍ରାତଃସ୍ନାନ ପାଇଁ ଆସିଥା'ନ୍ତି । କଥାବାର୍ତ୍ତା ହେଉ ହେଉ ନିତ୍ୟାନନ୍ଦ ପଚାରିଲେ, "ସେଦିନ ମୋ କଥା ତ ଆପଣ ଶୁଣିଲେ ନାହିଁ । ଏବେ ଆପଣଙ୍କର କୋମଳପୁର ବିଷୟରେ ଅଭିଜ୍ଞତା କ'ଣ?

"ସେମାନଙ୍କର ସେବାଯତ୍ନ ମୁଁ ତ ଜୀବନରେ ଭୁଲିପାରିବି ନାହିଁ ।" ଚିଦାନନ୍ଦ କହିଲେ ।

"କିନ୍ତୁ ମୁଁ କି ଅପରାଧ କରିଥିଲି ଯେ ସେ ଗାଁରେ ସାରାଦିନ ସାରାରାତି ଭୋକରେ କଟାଇଲି?" ନିତ୍ୟାନନ୍ଦ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"କୋମଳପୁର ଯିବା ବାଟରେ ପୋଖରୀଟିଏ ପଡ଼େ । ଆପଣ କ'ଣ ଦେଖି ନାହାନ୍ତି କି ପୋଖରୀ ସବୁ ଶୁଖି ମାଟି ଫାଟି ଯାଇଛି?" ଚିଦାନନ୍ଦ ପଚାରିଲେ ।

"ହଁ ଦେଖିଛି । ଆରେ ମୁଁ ତ ସେହି ପୋଖରୀ କୂଳରେ ଥିବା ଅଶ୍ୱତ୍ଥ ଗଛ ତଳେହିଁ ଦିନଟିଏ କଟାଇଛି । କିନ୍ତୁ ଶୁଖିଲା ପୋଖରୀ ଓ ଗ୍ରାମବାସୀଙ୍କ ବ୍ୟବହାର ମଧ୍ୟରେ କିଛି ସମ୍ବନ୍ଧ ଅଛି କି?" ନିତ୍ୟାନନ୍ଦ କହିଲେ ।

"ହଁ, ଗଭୀର ସମ୍ବନ୍ଧ ଅଛି । ଶୁଖିଲା ପୋଖରୀ ଦେଖି ଆପଣଙ୍କର ଜାଣିବା ଉଚିତ୍ ଯେ ସେଠାକାର ଲୋକେ ପାଣି ଟୋପାଏ ପାଇଁ କେତେ କଷ୍ଟ ସହୁଛନ୍ତି ଏବଂ ଆପଣ ଗ୍ରାମରେ ପହଞ୍ଚିବା ମାତ୍ରେ ପାଣି ମାଗିଲେ ।" କହିଲେ ଚିଦାନନ୍ଦ ।

"ଭୀଷଣ ଶୋଷରେ ତ ମୋର ଜୀବନ ଯାଉଥିଲା । ମୁଁ ଆଉ କ'ଣ କରନ୍ତି ? ତା' ଛଡ଼ା ସାଧୁସେବା ଦ୍ୱାରା ତ ଗୃହସ୍ଥ ମାନଙ୍କର ପୁଣ୍ୟ ବଢ଼େ ।" ନିତ୍ୟାନନ୍ଦ କହିଲେ ।

"ଠିକ୍ କଥା, କିନ୍ତୁ ଗ୍ରାମରେ କେତେ ମାସ ଧରି ସେମାନେ ଜଳକଷ୍ଟ ମଧ୍ୟରେ ଅଛନ୍ତି । ପିଇବା ପାଇଁ ମାତ୍ର କିଛି ପାଣି ଦୂର ଗ୍ରାମକୁ ଯାଇ ଗରା ମାଠିଆମାନଙ୍କରେ ଭରି ନେଇ ଆସନ୍ତି । ପୁଣି ଗ୍ରାମଲୋକମାନେ ସାଧୁସନ୍ଥଙ୍କୁ ଭକ୍ତିସେବା କରନ୍ତି ଏଇଥିପାଇଁ ଯେ ଦୁଃଖ ବା କଷ୍ଟ ଥିବା ପରିସ୍ଥିତିରେ ସାଧୁମାନେ କିଛି ନା କିଛି ଉପଦେଶ ବା ଉପାୟ ବତାଇ ଦେବେ । ଆମର ତ ସେମାନଙ୍କ ଉପରେ ଅଧିକାର କିଛି ନାହିଁ !" ସଦାନନ୍ଦ କହିଲେ ।

"ଆପଣ ଯାହା କହୁଛନ୍ତି ସତ । କିନ୍ତୁ ଆପଣ କେଉଁ କାରଣ ଯୋଗୁ ସେମାନଙ୍କର ଆଦର ଯତ୍ନ ବା ସେବା ସତ୍କାର ଲାଭ କରି ପାରିଲେ ?" ନିତ୍ୟାନନ୍ଦ ପଚାରିଲେ ।

"ମୁଁ ମୋର ବଡ଼ କମଣ୍ଡଳୁଟି ପୂର୍ଣ୍ଣ କରି କିଛି ପାଣି ନେଇ ଯାଇଥିଲି । ମୁଁ ଯାଇ ପହଞ୍ଚି ପାଣି ନ ମାଗି ବରଂ ନିଜେ ଶୋଷରେ ରହି କେତେ ତୃଷାର୍ତ୍ତ ଲୋକଙ୍କୁ ପାଣି ପିଆଇଲି । ତା' ଛଡ଼ା ନିକଟସ୍ଥ ପାହାଡ଼ରେ ବୁଲି ବୁଲି ଝରଣାର ସନ୍ଧାନ କଲି ଏବଂ ଗ୍ରାମବାସୀଙ୍କୁ ଖବର ଦେଲି । ଏବେ ଗ୍ରାମ-ବାସୀଙ୍କୁ ଖବର ଦେଲି । ଏବେ ଗ୍ରାମବାସୀ-ମାନେ ପାହାଡ଼ୀ ଝରଣା ପାଖରୁ ଛୋଟ ନାଳ କାଟି ପୋଖରୀକୁ ଦେଇ ପୋଖରୀରେ ପାଣି ଭର୍ତ୍ତି କରୁଛନ୍ତି ।" ସଦାନନ୍ଦ କହିଲେ ।

ଏକଥା ଶୁଣି ସାଧୁ ନିତ୍ୟାନନ୍ଦ ସଦାନନ୍ଦଙ୍କୁ ପ୍ରଣାମ କରି କହିଲେ, "ମୁଁ ତ ବହୁତ ଦିନ ହେବ ସାଧୁ ଜୀବନ ବିତାଉଛି । କିନ୍ତୁ ଆଜହିଁ ମୁଁ ଉପଲବ୍ଧି କରୁଛି ପ୍ରକୃତ ସାଧୁର କର୍ତ୍ତବ୍ୟ କ'ଣ ହେବା ଉଚିତ୍ ।"





# ପରିବର୍ତ୍ତନ

ଲଳିତାପୁର ଗ୍ରାମରେ ଗୋଟିଏ ସରଳ ଓ ସୁଖୀ ଦମ୍ପତି ଥା'ନ୍ତି । ସେମାନଙ୍କ ନାମ ଅନୁସୂୟା ଓ ରମାପତି । ସେମାନଙ୍କର ଦୁଇଟି ପୁଅ ଥା'ନ୍ତି ଇନ୍ଦ୍ରନାଥ ଓ ଚନ୍ଦ୍ରନାଥ । ଇନ୍ଦ୍ରନାଥ ବଡ଼ ହୋଇ ଗ୍ରାମ ପାଠଶାଳାରେ ଶିକ୍ଷକ ଭାବରେ ଯୋଗ ଦେଲେ । ଚନ୍ଦ୍ରନାଥ ସହରର ଗୋଟିଏ ନାଟ୍ୟସଂସ୍ଥାରେ ଗାୟକ ଓ ଅଭିନେତା ରୂପରେ କାମ କରୁଥା'ନ୍ତି । ଦୁହିଁଙ୍କର ବିବାହ ହୋଇଗଲା । ଇନ୍ଦ୍ରନାଥଙ୍କ ସ୍ତ୍ରୀ ହେଲେ ସୁମତୀ ଓ ଚନ୍ଦ୍ରନାଥଙ୍କ ସ୍ତ୍ରୀ ହେଲେ ଲକ୍ଷ୍ମୀ । ଦୁଇ ପୁଅଙ୍କ ବିବାହ ପରେ ସ୍ୱାମୀ ସ୍ତ୍ରୀଙ୍କର କର୍ତ୍ତବ୍ୟ ଶେଷ ହେଲା । ସେମାନେ ପନ୍ଦରଦିନ ବଡ଼ପୁଅ ଘରେ ତ ପନ୍ଦରଦିନ ସାନପୁଅ ଘରେ ରହୁଥା'ନ୍ତି ।

ଥରେ ସେମାନେ ବଡ଼ପୁଅ ଘରେ ରହୁଥିବା ସମୟରେ ଖବର ମିଳିଲା କି ଚନ୍ଦ୍ରନାଥଙ୍କୁ ଖୁବ୍ ଜ୍ୱର ହୋଇଛି । ଏ ଖବର ପାଇ ଅନୁସୂୟା ବଡ଼ବୋହୂ ସୁମତିଙ୍କୁ କହିଲେ, "ସାନପୁଅର ଜର । ପିଲାବେଳୁ ଟିକିଏ ଜର ହେଲେ ସେ ବ୍ୟସ୍ତ ହୋଇ ପଡ଼େ । ମୁଁ ଟିକିଏ ଯାଇ ତାକୁ ଦେଖିଆସେ । ତୋର ଶ୍ୱଶୁର ଏସବୁ କିଛି ଭାବନ୍ତି ନାହିଁ ।" ଏକଥା କହି ସେ ସହରକୁ ଚାଲିଗଲେ ।

ସେଇଦିନ ରାତିରେ ଚନ୍ଦ୍ରନାଥଙ୍କୁ ସୁମତି କହିଲେ, "ଦେଖୁଛ ତ ମା'ଙ୍କର ପକ୍ଷପାତ ନୀତି? ଛୋଟପୁଅ ତୁମଠାରୁ ବେଶି ପଇସା ରୋଜଗାର କରୁଛି ବୋଲି ତା'ର ଛୁଙ୍କ ଟିକିଏ ହେଲେ ସେ ଦେଖିବାକୁ ଚାଲି ଯାଉଛନ୍ତି । ସେ ତାକୁ ବେଶି ଭଲ ପାଉଛନ୍ତି । ତୁମର ଦେହ ଖରାପ ଖବର ସେମାନେ ଦୂରରେ ଥାଇ ପାଇଲେ କେବେ ବି ଆସିବେ ନାହିଁ ।"

ଏକଥାର ଉତ୍ତର ଇନ୍ଦ୍ରନାଥ କିଛି ନ ଦେଇ କେବଳ ଚୁପ୍ ରହିଲେ । କିଛିଦିନ ପରେ ଅନୁସୂୟା ବଡ଼ପୁଅ ଘରକୁ ଫେରି ଆସିଲେ ଓ କହିଲେ, "ଚନ୍ଦ୍ରର ତ ଦୁଇଦିନ ଜରରେ ଅବସ୍ଥା ଖରାପ ହୋଇ ଯାଇଥିଲା । ଏବେ ଭଲ ଅଛି ।"

ସୁମତି ଶାଶୁଙ୍କୁ ପ୍ରଣାମ କରି କହିଲେ, "ଯଦି ଦରକାର ଥିଲା ଆଉ କିଛିଦିନ ରହିଗଲେ ନାହିଁ ? ସେ ଘର କାହାର, ଏ ଘର ବା କାହାର ? ସବୁ ତ ଆପଣଙ୍କର । ଯେଉଁଠାରେ ଇଚ୍ଛା ରହନ୍ତୁ ।"

ସପ୍ତାହେ ପରେ ଅନୁସୂୟାଙ୍କ ସାନଭାଇ ମହେନ୍ଦ୍ର ଲଳିତାପୁର ଆସିଥା'ନ୍ତି । ସେ ତାଙ୍କ ଗ୍ରାମରେ ଜଣେ ଭଲ ଚାଷୀ । ଚାରିପାଞ୍ଚ ବର୍ଷ ପୂର୍ବରୁ ଅନେକ ଦିନ ଧରି ବର୍ଷା ନ ହେବାରୁ ତାଙ୍କର ଫସଲ ସବୁ ନଷ୍ଟ ହୋଇ ଯାଇଥିଲା । ତେଣୁ ତାଙ୍କୁ ଅନୁସୂୟା ନିଜର ଅଳଙ୍କାର ବନ୍ଧକ ଚାରିହଜାର ଟଙ୍କା କରଜ ଦେଇଥିଲେ । ପରେ ଫସଲ ହେବାରୁ ସେ ସେହି ଟଙ୍କା ଫେରାଇବାକୁ ଆସିଥିଲେ ।

ମହେନ୍ଦ୍ର ସବୁ ଟଙ୍କା ଫେରାଇ ଦେଇ କହିଲେ, "ଅପା, ଏ ଟଙ୍କା ମୋତେ ବିପଦ ସମୟରେ ବଞ୍ଚାଇ ଦେଲା । ଏବେ କିଛି ଅସୁବିଧା ନାହିଁ ।"

ମହେନ୍ଦ୍ର ଚାଲିଯିବା ପରେ ଅନୁସୂୟା ସୁମତିଙ୍କୁ ଡାକି କହିଲେ, "ଦେଖ୍ ବୋହୂ, ଏଇ ବୟସରେ ମୋର ତ ଆଉ ଅଳଙ୍କାର ଲଗାଇବାର ସଉକ୍ ନାହିଁ । ଚନ୍ଦ୍ର ନିଜେ ତ



ବହୁତ ରୋଜଗାର କରୁଛି । ତା' ତୁଳନାରେ ଚନ୍ଦ୍ରନାଥର ରୋଜଗାର କମ୍ । ଏଇ ଗୃହିହଜାର ଟଙ୍କା ତୁ ନେଇ ରଖ । ବହୁତ କାମରେ ଲାଗିବ ।"

ଶାଶୁଙ୍କର ଏପରି ସ୍ନେହ ଭାବ ଦେଖି ସୁମତିଙ୍କ ଆଖିରେ ଲୁହ ଆସିଗଲା । ସେ ଶାଶୁଙ୍କ ବିଷୟରେ ଆଗରୁ ଯାହା ଭାବିଥିଲେ ସେକଥା ମନେ କରି ବହୁତ ପଶ୍ଚାତ୍ତାପ କଲେ । ଟଙ୍କାଧରି ସେ ଶାଶୁଙ୍କ ପାଦଛୁଇଁ ପ୍ରଣାମ କଲେ ।

ରାତିରେ ସୁମତି ନିଜେ ଇନ୍ଦ୍ରନାଥଙ୍କୁ ଏ ଖବର ଦେଲେ । ଏକଥା ଶୁଣି ଇନ୍ଦ୍ରନାଥ କହିଲେ, "ମା' ଯେତେବେଳେ ଚନ୍ଦ୍ରକୁ ଦେଖିବାକୁ ସହରକୁ ଯାଇଥିଲେ ତମେ କ'ଣ କହିଥିଲ ମନେ ଅଛି? ମୁଁ ଜାଣି ଜାଣି ସେତେବେଳେ ଚୁପ୍ ଥିଲି । ମୁଁ ମୋ ମା'ଙ୍କୁ ଭଲଭାବରେ ଜାଣେ । ଯେଉଁଠି କିଛି କମ୍ତି ଥାଏ ସେ ତାକୁ ପୂରା କରିବାକୁ ଚେଷ୍ଟା କରନ୍ତି । ପିଲାଦିନଠୁ ମୋର ସ୍ୱାସ୍ଥ୍ୟ ଭଲ । କଦାଚିତ୍ କ୍ୱଚିତ୍ ବେମାର ପଡ଼େ । କିନ୍ତୁ ଚନ୍ଦ୍ର ଅନେକ ଥର ବେମାର ପଡି କଷ୍ଟ ଭୋଗିଛି । ତେଣୁ ତା'ର ଟିକିଏ କ'ଣ ହେଲେ ସେ ବହୁତ ଚିନ୍ତିତ ହୋଇ ପଡ଼ନ୍ତି ।"

ସୁମତି କହିଲେ, "ସତରେ ମୋର ଭୁଲ୍ ଯେ ମୁଁ ମା'ଙ୍କୁ ଭୁଲ୍ ବୁଝିଲି । ତାଙ୍କ ହୃଦୟରେ ଦୁଇ ପୁଅଙ୍କ ପାଇଁ ସମାନ ସ୍ଥାନ ଅଛି ।"

ପୁଣି କିଛି ସମୟ ଭାବି କହିଲେ, "ଆମର ରୋଜଗାର ଯିନା କମ୍ । ଗ୍ରାମରେ ରହିଥିବାରୁ ଖର୍ଚ୍ଚ ମଧ୍ୟ ତ କମ୍ । ସବୁ ତ ବାଡ଼ିବଗିଚାରୁ ମିଳୁଛି । ଚନ୍ଦ୍ରର ରୋଜଗାର ବେଶି ହେଲେ ମଧ୍ୟ ଖର୍ଚ୍ଚ ମଧ୍ୟ ବେଶି । ତେଣୁ ମୁଁ ଭାବୁଛି ତୁମେ ମା'ଙ୍କୁ କୁହ ସେ ଗୃହିହଜାରରୁ ଦୁଇହଜାର ଚନ୍ଦ୍ରଙ୍କ ପାଖକୁ ପଠାଇ ଦେବା।"

ନିଜ ସ୍ତ୍ରୀର ଏପରି ପରିବର୍ତ୍ତନ ଦେଖି ଇନ୍ଦ୍ରନାଥ ଖୁବ୍ ଖୁସି ହେଲେ ।






# ସମାଧାନ

ଧାର ନଗରରେ ବଜ୍ରଗୁପ୍ତ ନାମକ ଜଣେ ଧନୀ ବ୍ୟକ୍ତି ଥା'ନ୍ତି । ତାଙ୍କର ଧନ ରୋଜଗାର କରିବାର ପନ୍ଥା ଥିଲା ଦୁଇଟି । ଗୋଟିଏ ହେଲା ଜମିଜମା । ଦ୍ୱିତୀୟଟି ହେଲା ଅଳଙ୍କାର ଦୋକାନ । ଦୁଇଟି ଦ୍ୱାରା ସେ ଏତେ ଲାଭ ପାଉଥା'ନ୍ତି ଯେ କୁହାଯାଏ ତାଙ୍କର ଯେତେ ଧନ ଅଛି ସେଥିରେ କେତେପୁରୁଷ ଧରି ବସି ଖାଇଲେ ମଧ୍ୟ ଶେଷ ହେବନାହିଁ ।

କିନ୍ତୁ ବଜ୍ରଗୁପ୍ତଙ୍କର ଧନ ପ୍ରତି ଆଦୌ ଲୋଭ ନଥିଲା । ସେ ଭାବୁଥିଲେ ଧନଲୋଭର ଶେଷ ନାହିଁ । ତେଣୁ ଶେଷଜୀବନରେ ପୁଅମାନଙ୍କ ହାତରେ ସବୁ ସମର୍ପଣ କରି ସେ କାଶୀରେ ଯାଇ ରହିବେ ।

ଦିନେ ପୁଅ ଦୁହିଁଙ୍କୁ ଡାକି ନିଜର ମନୋଭାବ କଥା କହିଲେ । ଦୁଇ ପୁଅ ଥିଲେ ପିତାଙ୍କର ବାଧ୍ୟ ଓ ଆଜ୍ଞାକାରୀ । ଯଦିଓ ସେମାନେ ଚାହୁଁ ନଥିଲେ ପିତା ଏତେ ଦୂରରେ ରହନ୍ତୁ ବୋଲି ତଥାପି ତାଙ୍କ ସାମ୍ନାରେ କିଛି କହିପାରୁ ନଥିଲେ ।

ଏବେ ବଜ୍ରଗୁପ୍ତଙ୍କର ଚିନ୍ତାର ବିଷୟ ହେଉଛି କେଉଁ ପୁଅକୁ କେଉଁ ବ୍ୟବସାୟଟି ଦେବେ । ଦୁଇପୁଅ ଥିଲେ ବୁଦ୍ଧିମାନ, ପରିଶ୍ରମୀ ଓ ସହନଶୀଳ । କିନ୍ତୁ ଦୁଇଟି ଭିନ୍ନ କାର୍ଯ୍ୟ ପାଇଁ ଦୁଇ ପ୍ରକାର ଭିନ୍ନ ବୁଦ୍ଧି ଓ ଭିନ୍ନ ବ୍ୟବହାର ଦରକାର । ଦୋକାନ ପାଇଁ ମଧୁର ବ୍ୟବହାର ଓ ଶାନ୍ତ ସ୍ୱଭାବ ଦରକାର, ଯାହା ଜମିଜମା କାର୍ଯ୍ୟ ପାଇଁ ଉପଯୁକ୍ତ ନୁହେଁ ।

ଏଇ କଥା ଉପରେ ବିଚାର କରି ଶେଷରେ ସେ ଦୁହିଁଙ୍କୁ ଡାକି ଦୁହିଁଙ୍କ ହାତରେ ଦୁଇଟି ମୁଦ୍ରା ଦେଇ କହିଲେ, "ତୁମର ଯାହା ପସନ୍ଦ ଜିନିଷ ଏଥିରେ କିଣି ନେଇ ଆସ ।"

ବଡ଼ପୁଅ ଶ୍ରୀକାନ୍ତ ମୁଦ୍ରାଟିକୁ ଓଲଟପାଲଟ କରି ଦେଖିଲା ଓ ପିତାଙ୍କୁ କହିଲା, "ବାବା, ଇଏ ତ ଅଚଳ ମୁଦ୍ରା । ଏଥିରେ ତ କିଛି ମଧ୍ୟ ମିଳିବ ନାହିଁ, ଓଲଟା ଅପମାନିତ ହେବାକୁ ପଡ଼ିବ ।" ଏକଥା କହି ସେଇଟିକୁ ସେଇଠାରେ ରଖି ସେ ଚାଲିଗଲା ।

ଦ୍ୱିତୀୟ ପୁତ୍ର ପ୍ରଶାନ୍ତ ମଧ୍ୟ ନିଜ ମୁଦ୍ରାକୁ ସନ୍ଦେହ ଦୃଷ୍ଟିରେ ଅନାଇଲା । ଓଲଟପାଲଟ କରି ଦେଖିଲା ସେଇଟା ପ୍ରକୃତରେ ଅଚଳ । କିନ୍ତୁ ପିତାଙ୍କୁ ସ୍ପଷ୍ଟ କହିବା ଭଳି ସାହସ ତା'ର ନଥିଲା । ସେ ଧୀର ଓ ଶାନ୍ତ ଭାବରେ ପିତାଙ୍କ ପାଖକୁ ଯାଇ କହିଲା, "ବାବା ବଜାରରେ ରେଜା ହୁଏତ ମିଳି ନ ପାରେ, ତେଣୁ ମୋତେ ଏ ପଇସା ବଦଳରେ କିଛି ରେଜା ଦିଅନ୍ତୁ ।"

ବଜ୍ରଗୁପ୍ତ ଖୁସି ହୋଇ କହିଲେ, "ଏବେ ତୁମ ଦୁହିଁଙ୍କର ବଜାର ଯିବା ଦରକାର ନାହିଁ । ମୋର ଚିନ୍ତା ଦୂର ହୋଇଛି । ଶ୍ରୀକାନ୍ତ ଜମିବାଡି ବୁଝୁ । ଆଉ ପ୍ରଶାନ୍ତ ଅଳଙ୍କାର ଦୋକାନ ବୁଝୁ ।"

ପୁଅମାନେ ଆଶ୍ଚର୍ଯ୍ୟ ଆଖିରେ ଚାହିଁଲେ । ପିତା କିପରି ଏତେ ଶୀଘ୍ର ସବୁ କଥାର ନିର୍ଣ୍ଣୟ କଲେ ? ତାହାହିଁ ହେଲା ସେମାନଙ୍କ ମନରେ ପ୍ରଶ୍ନ । ତେବେ ପିତାଙ୍କ ବିଚାରବୁଦ୍ଧି ଉପରେ ଦୁଇଜଣଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ସେମାନେ ଜିଜ୍ଞାସୁ ଭାବରେ ଅନାଇବାର ଦେଖି ପିତା କହିଲେ, "ଯେଉ କାମରେ ମୂଲିଆମାନଙ୍କ ସହିତ ମଧ୍ୟେ ମଧ୍ୟେ କଠୋର ହେବାକୁ ପଡ଼େ । ଶ୍ରୀକାନ୍ତ ସେ କାର୍ଯ୍ୟ ବେଶ୍ ପାରିବ । ତେଣୁ ତାକୁ ସେ କାମ ଦିଆଗଲା । ଆଉ ଅଳଙ୍କାର ଦୋକାନରେ ଗ୍ରାହକମ ନଙ୍କ କଥା ସହ୍ୟ କରି ସେମାନଙ୍କ ସହିତ ଧୈର୍ଯ୍ୟର ସହିତ ବ୍ୟବହାର କରିବା ଉଚିତ । ପ୍ରଶାନ୍ତ ସେଇଟା ଭଲ ପାରିବ । ତେଣୁ ସେ ଦୋକାନରେହିଁ ରହିବ ।"

ଏହିପରି ଭାବରେ ବଜ୍ରଗୁପ୍ତ ଦୁଇପୁଅଙ୍କର କାମ ବିଷୟରେ ସମାଧାନ କରିଥିଲେ ।






# ବିଷ୍ଣୁ ପୁରାଣ

ଯମଦଗ୍ନିଙ୍କ ଶରୀର ହଠାତ୍ ସ୍ଥିର ହୋଇଗଲା ଓ ତାଙ୍କର ମୃତଦେହ ତଳେ ପଡ଼ିଗଲା । ରେଣୁକାଦେବୀ ସ୍ୱାମୀଙ୍କ ମୃତ ଶରୀର ନିକଟରେ ମଥାପିଟି କାନ୍ଦିବାକୁ ଲାଗିଲେ । ଠିକ୍ ସେତିକି-ବେଳେ ପରଶୁରାମ ବଣରୁ ଆଶ୍ରମକୁ ଫେରି ଏପରି ଘଟଣା ଦେଖି କ୍ରୋଧରେ ପାଗଳ ହୋଇଗଲେ ଓ ନିଜର ପରଶୁଟି ଧରି ମାହେଷ୍ମତୀ ନଗର ଅଭିମୁଖରେ ଧାଇଁଲେ ।

ଇତିମଧ୍ୟରେ ମହର୍ଷି ଭୃଗୁ ବୁଲି ବୁଲି ଆସି ଯମଦଗ୍ନିଙ୍କ ଆଶ୍ରମରେ ପହଞ୍ଚିଲେ । ରେଣୁକାଙ୍କ ଆକୁଳ କ୍ରନ୍ଦନରେ ତାଙ୍କ ହୃଦୟ ବ୍ୟଥିତ ହେଲା; ସେ ରେଣୁକାଙ୍କୁ ସାନ୍ତ୍ୱନା ଦେଲେ ଓ ନିଜର ତପସ୍ୟା ଶକ୍ତି ଦ୍ୱାରା ଯମଦଗ୍ନିଙ୍କୁ ଜୀବିତ କରାଇଲେ ।

ତେଣେ ମାହେଷ୍ମତୀ ନଗରରେ ସୈନିକ-ମାନେ ଯଜ୍ଞଧେନୁ ଉପରେ ଅକଥନୀୟ ଅତ୍ୟାଚାର କରୁଥା'ନ୍ତି । କାରଣ ସେମାନଙ୍କ ଇଚ୍ଛା ଅନୁସାରେ ଧେନୁ କିଛି ଦେଉ ନଥିଲା । ସେଠାରେ ଉଗ୍ରମୂର୍ତ୍ତି ଧାରଣ କରି କ୍ରୋଧରେ କମ୍ପି କମ୍ପି ପହଞ୍ଚିଲେ ପରଶୁରାମ ଓ ସୈନ୍ୟ-ଦଳଙ୍କୁ ଆକ୍ରମଣ କଲେ । ମୁହୂର୍ତ୍ତକ ମଧ୍ୟରେ ସମଗ୍ର ସୈନ୍ୟଦଳ ଛିନ୍ନଛିନ୍ନ ହୋଇ କୁଆଡ଼େ ପଳାଇଲେ । ସେ ଧେନୁକୁ ଆଦରର ସହିତ ଆଉଁସି ଦେଲେ ଓ ନିର୍ଭୟରେ ଆଶ୍ରମ ଫେରି-ଯିବାକୁ ନିର୍ଦ୍ଦେଶ ଦେଲେ । ତା'ପରେ ପୁଣି ସେ କୁଠାର ଉତ୍ତୋଳନ କରି ରାଜାଙ୍କ ପ୍ରାସାଦ ଅଭିମୁଖରେ ଧାଇଁଲେ । ବାହାରେ ଥାଇ ଡାକ ଦେଲେ, "ଆରେ ଦୁଷ୍ଟ, ରାଜା ତ ପ୍ରଜାର

୮. ପରଶୁରାମ ଅବତାର




ରକ୍ଷକ ହୋଇଥାଏ । ଯଦି ନିଜର କର୍ତ୍ତବ୍ୟ ଭୁଲି ରାଜା ଅପରାଧ କରେ, ତେବେ ତାକୁ ଦଣ୍ଡହିଁ ପ୍ରାପ୍ୟ । ପ୍ରାସାଦରୁ ବାହାରି ଆସି ପାପର ଫଳ ଭୋଗ କର ।" ପରଶୁରାମଙ୍କର ରୁଦ୍ରରୂପ ଦେଖି ସମସ୍ତେ ଡରିଗଲେ । ସେ ସାକ୍ଷାତ୍ କାଳ ପରି ଦେଖା ଯାଉଥା'ନ୍ତି ।

ତାଙ୍କର ସେପରି ବିକରାଳ ରୂପ ଦେଖି ଓ ଭୟଙ୍କର ରଡ଼ ଶୁଣି ଦ୍ୱାରପାଳ ଓ ସୈନ୍ୟମାନେ ଦୂରେଇ ଠିଆ ହୋଇଥା'ନ୍ତି । ସେ ପ୍ରାସାଦର ଅନ୍ଦର ମହଲରେ ପଶି ପୁଣି ଡାକ ଦେଲେ, "ଆରେ ପାପୀ ରାଜା, ତୁ କାହିଁକି ଏବେ ଘରେ ଲୁଚିଛୁ ? ମୋର ପରଶୁ ତୋର ରକ୍ତ ପିଇବା ପାଇଁ ଅପେକ୍ଷା କରିଛି । ଯାହା ରାଜ୍ୟରେ ଗୋ ବ୍ରାହ୍ମଣ, ଋଷିମୁନି ମାନଙ୍କ ଉପରେ ଅତ୍ୟାଚାର କରାଯାଏ, ସେ ରାଜା ହତ୍ୟାର ଯୋଗ୍ୟ ।"

ପରଶୁରାମଙ୍କର ଯୁଦ୍ଧ ଡାକରାରେ କାର୍ତ୍ତବୀର୍ଯ୍ୟ ବାହାରି ଆସିଲେ; ଦୁହିଁଙ୍କ ଭିତରେ ତୁମୁଳ ସଂଗ୍ରାମ ହେଲା । ଯୁଦ୍ଧ କରୁ କରୁ ରାଜାଙ୍କର ଧାରଣା ହେଲା କି ସେ ତ ଚକ୍ରପୁରୁଷ, ଯେତେ ଶୀଘ୍ର ପୃଥିବୀ ଛାଡ଼ିଗଲେ ସେ ପୁଣି ଚକ୍ରରେ ଲୀନ ହୋଇଯିବେ । କ୍ରମେ ଯୁଦ୍ଧ କରିବାରୁ ତାଙ୍କର ଆଗ୍ରହ କମିଗଲା ଓ ସେ ଦୁର୍ବଳ ହୋଇପଡ଼ି ନିହତ ହେଲେ । ମୃତ୍ୟୁ ପରେ ସେ ଯାଇ ସୁଦର୍ଶନ ଚକ୍ରରେ ଲୀନ ହୋଇଗଲେ ।

ପରଶୁରାମ ଏବେ ସନ୍ତୋଷର ସହିତ ଆଶ୍ରମ ଫେରି ଆସିଲେ । ପିତାଙ୍କୁ ଜୀବିତ ଅବସ୍ଥାରେ ଦେଖି ସବୁ ଘଟଣା ବର୍ଣ୍ଣନା କଲେ । ସବୁ ଶୁଣି ଯମଦଗ୍ନି କହିଲେ, "ଦେଖ ପୁତ୍ର, ଆମେ ବ୍ରାହ୍ମଣ; ତୁମେ ଯେଉଁ ହତ୍ୟାକାଣ୍ଡ କଲ ତାହା ଆମର ସ୍ୱଧର୍ମ ନୁହେଁ । ତେଣୁ ସେ ପାପର ପ୍ରାୟଶ୍ଚିତ୍ତ ପାଇଁ ତପସ୍ୟା କର ।"

ପରଶୁରାମ କହିଲେ, "ପିତା, ମୁଁ ଆପଣଙ୍କ ଆଦେଶ ଅନୁସାରେ ତପସ୍ୟା କରିବି କିନ୍ତୁ ପ୍ରାୟଶ୍ଚିତ୍ତ କରିବା ପାଇଁ ନୁହେଁ ।" ତା'ପରେ ସେ ବଣକୁ ଚାଲିଗଲେ ତପସ୍ୟା କରିବା ସକାଶେ ।

ଏଣେ କାର୍ତ୍ତବୀର୍ଯ୍ୟଙ୍କର ଏକହଜାର ପୁତ୍ର ପରଶୁରାମଙ୍କ ଅନୁପସ୍ଥିତିରେ ଆଶ୍ରମ ଆକ୍ରମଣ କଲେ । ସେମାନେ ଆସି ଯମଦଗ୍ନି ତପସ୍ୟା

କରୁଥିବା ସମୟରେ ତାଙ୍କର ଶିରଚ୍ଛେଦନ କଲେ ଓ କଟା ମୁଣ୍ଡକୁ ଦୂରକୁ ଫୋପାଡ଼ ଦେଲେ । ରେଣୁକା ଦେବୀ ଏକୋଇଶବାର ଆର୍ତ୍ତ ଚିତ୍କାର କଲେ । ତପସ୍ୟାରତ ପରଶୁ-ରାମଙ୍କ କାନରେ ତାହା ବାରମ୍ବାର ଶୁଭିଲା । ସେ ବିଚଳିତ ହୋଇ ପଡ଼ିଲେ ଓ ବୁଝିପାରିଲେ କିଛି ନା କିଛି ବିଘ୍ନ ଘଟିଛି । ସେ ତପସ୍ୟା ଛାଡ଼ି ପରଶୁ ଧରି ଆଶ୍ରମ ଆଡ଼କୁ ଧାଇଁଲେ । ଆସି ଦେଖିଲେ ଆଶ୍ରମ ଘର ସବୁ ପୋଡ଼ି ଛାରଖାର ହୋଇଛି । ଆଶ୍ରମବାସୀ ଅଧିକାଂଶ ମୃତ । ଯମଦଗ୍ନି ଓ ରେଣୁକା ଦୁହେଁ ମୃତ ଓ ସେହି ଅଗ୍ନିରେହିଁ ଦୁହିଁଙ୍କ ଶରୀର ଜଳି ଯାଇଛି । ଅଦୂରରେ ଯମଦଗ୍ନିଙ୍କ ମୁଣ୍ଡଟି ଗଡ଼ି ଗଡ଼ି ଦୁଇଟି ପଥର ମଝିରେ ଅଟକି ଯାଇଥିଲା । ତାକୁ ଦେଖି ତାଙ୍କର କ୍ରୋଧ ଦ୍ୱିଗୁଣିତ ହେଲା । ସେ ମୁଣ୍ଡଟିକୁ ହାତରେ ଧରି କହିଲେ, "ମୋର ହୃଦୟର ଜ୍ୱାଳାରେ ମୋ ଆଖିରୁ ଅଶ୍ରୁ ଶୁଖି ଯାଇଛି । ପିତା, କ୍ଷତ୍ରିୟ ରକ୍ତରେ ଆପଣଙ୍କ ଶୀରକୁ ବୁଡ଼ାଇ ପାରିଲେ ଯାଇ ମୁଁ ଆପଣଙ୍କର ଅନ୍ତ୍ୟେଷ୍ଟି କ୍ରିୟା କରିବ ।"

ତା'ପରେ ସେ ଏକ ଉଚ୍ଚ ଶିଳା ଉପରକୁ ଉଠି, ପରଶୁକୁ ଉତ୍ତୋଳନ କରି ସତ୍ୟ କଲେ କି, "ମୁଁ ଏଇ ପରଶୁ ଦ୍ୱାରା ପୃଥିବୀକୁ ଏକୋଇଶବାର ନିକ୍ଷତ୍ରିୟ କରିବ ।"

ତାଙ୍କର ଭୟଙ୍କର, କରାଳ ରଡ଼ିରେ ଦଶ ଦିଗ ପୂର୍ଣ୍ଣ ହେଲା । ସେସବୁ ଶୁଣି ବ୍ରହ୍ମା,



ଅନ୍ୟ ଦେବତାମାନେ ଓ ମହର୍ଷିମାନେ ସେଠାକୁ ଆସି ତାଙ୍କୁ ଶାନ୍ତ କରିବାକୁ ଚେଷ୍ଟା କଲେ ।

ମହର୍ଷି ଭୃଗୁ କହିଲେ, "ବତ୍ସ, ଯେଉଁଠି ଦୁଷ୍ଟ ଲୋକ ଅତ୍ୟାଚାର କରନ୍ତି ସେଠାରେ ଭଗବାନ୍ ସ୍ୱୟଂ ଆସି ଦଣ୍ଡ ଦିଅନ୍ତି । ତୁମେ ଋଷି ପୁତ୍ର ହୋଇ ଏପରି କ୍ରୁରକାର୍ଯ୍ୟ କରିବାକୁ ନିଜେ କାହିଁକି ଇଚ୍ଛା କରୁଛ ?"

ପରଶୁରାମ କହିଲେ, "ଭଗବାନ ଆକାଶରୁ କେବେ ଖସିପଡ଼ନ୍ତି ନାହିଁ । ଆମରିମାନଙ୍କ ମାଧ୍ୟମରେହିଁ ତାଙ୍କର ଶକ୍ତି କାର୍ଯ୍ୟ କରିଥାଏ । ଯେତେବେଳେ ମନୁଷ୍ୟ ନିଜର କର୍ତ୍ତବ୍ୟ ଭୁଲି ଦୁର୍ବଳ ଉପରେ ଅତ୍ୟାଚାର କରିଥାଏ ଓ ତାହା ସୀମାତୀତ ହୋଇଥାଏ । ସେଠାରେ ଆମରି



ମଧ୍ୟରୁ କୌଣସି ମନୁଷ୍ୟ ଭିତରେ ଭଗବାନ ପ୍ରକଟ ହୋଇ ଦୁଷ୍ଟଦଳନ କରିଥା'ନ୍ତି । ଆପଣ ମୋର ପିତାମହ । ମନେ କରନ୍ତୁ ମୁଁ ସେହିପରି ଜଣେ ବ୍ୟକ୍ତି ।" ଏକଥା କହି ସେ ହିମାଳୟ ଚାଲିଗଲେ ଓ ଭଗବାନ ଶିବଙ୍କ ପାଇଁ ଘୋର ତପସ୍ୟା କରିବାକୁ ଲାଗିଲେ । ଶିବ ସ୍ୱୟଂ ତାଙ୍କ ତପସ୍ୟାରେ ପ୍ରସନ୍ନ ହୋଇ ପ୍ରକଟ ହେଲେ ଓ ତାଙ୍କୁ ଶାନ୍ତ ହେବାକୁ କହିଲେ ।

ପରଶୁରାମ ଶିବଙ୍କୁ କହିଲେ, "ଭଗବାନ, ଆପଣଙ୍କ ଆଜ୍ଞା ବିନା କୌଣସି କାର୍ଯ୍ୟ ହୋଇ ପାରିବ ନାହିଁ । ଆପଣ ମୋର ଶପଥ କଥା ଜାଣନ୍ତି । ସେ ଶପଥ ପୂର୍ଣ୍ଣ କରିବା ପାଇଁ ଆବଶ୍ୟକ ବଳ ପ୍ରଦାନ କରନ୍ତୁ ।"

ଶିବ ପରଶୁରାମଙ୍କୁ ଅନେକ ଅସ୍ତ୍ର ଶସ୍ତ୍ର ସହିତ ଏକ ଦିବ୍ୟାସ୍ତ୍ର ଦେଇ କହିଲେ, "ଏହି ଅସ୍ତ୍ର ତୁମରି ନାମ ଅନୁସାରେ ଭାର୍ଗବାସ୍ତ୍ର ନାମରେ ସଂସାରରେ ପ୍ରସିଦ୍ଧ ହେବ । ତୁମେ ଦିବ୍ୟ-ପୁରୁଷଙ୍କ କଳା ଧରି ଆସିଛ । ଯାଅ, ତୁମ କାମରେ କେହି ବାଧା ଦେଇ ପାରିବେ ନାହିଁ । ତୁମର ଉଦ୍ଦେଶ୍ୟ ଅଚିରେ ସିଦ୍ଧ ହେବ । ମୋର ଆଶୀର୍ବାଦ ତୁମ ସହିତ ଥିବ ।" ଏକଥା କହି ଶିବ ଅନ୍ତର୍ଦ୍ଧାନ ହୋଇଗଲେ । ତା'ପରେ ପରଶୁରାମ ବୈକୁଣ୍ଠକୁ ଗଲେ ବିଷ୍ଣୁଙ୍କର ଆଶିର୍ବାଦ ଆଣିବା ପାଇଁ । ସେ ତାଙ୍କୁ କବଚ ଶକ୍ତି ଓ ଏକ ଦିବ୍ୟଧନୁ ଦେଇ କହିଲେ, "ଏହି ଧନୁ ମୁଁ ରାମଅବତାରରେ ତୁମଠାରୁ ଫେରାଇ ନେବି ।"

ଏହିପରି ନାନା ଦିବ୍ୟାସ୍ତ୍ର ଓ ଦିବ୍ୟଶକ୍ତି ସମନ୍ୱିତ ହୋଇ ପରଶୁରାମ କ୍ଷତ୍ରିୟସଂହାର ଆରମ୍ଭ କଲେ । ସେତେବେଳେ କ୍ଷତ୍ରିୟ ରାଜାମାନେ ଧର୍ମମାର୍ଗରୁ ହୁରେଇ ଯାଇ ଗୋ ବ୍ରାହ୍ମଣ, ସ୍ତ୍ରୀ ଓ ଦୁର୍ବଳ ବ୍ୟକ୍ତିଙ୍କ ଉପରେ ଯଥେଚ୍ଛା ଅତ୍ୟାଚାର କରି ନିଜର କର୍ତ୍ତବ୍ୟ ଓ ବିବେକ ଭୁଲି ଅଧର୍ମ ମାର୍ଗରେ ଚାଲିଥା'ନ୍ତି । ପରଶୁରାମଙ୍କୁ ପାଇ ପ୍ରଜାମାନେ ଆନନ୍ଦିତ ହୋଇ ତାଙ୍କ ସହିତ ମିଳି ରାଜାମାନଙ୍କ ବିରୁଦ୍ଧରେ ଗଲେ । ଏସବୁ ଶୁଣି କାର୍ତ୍ତବୀର୍ଯ୍ୟଙ୍କ ପୁତ୍ରଗଣ ଓ ଅନ୍ୟାନ୍ୟ ରାଜାମାନେ ରାଜ୍ୟ ଛାଡ଼ି ପଳାଇଲେ । ପରଶୁରାମ ତାଙ୍କର ଆଗ୍ନେୟାସ୍ତ୍ର ନିକ୍ଷେପ କରି



ମହେଷ୍ମତୀ ନଗର ଭସ୍ମ କଲେ ଓ ରାଜାମାନଙ୍କର ଅନୁଧାବନ କଲେ । ଅବଶେଷରେ ସେମାନଙ୍କୁ ସେ ବଧ କଲେ । ସେମାନଙ୍କ ରକ୍ତରେ ପିତା ଯମଦଗ୍ନିଙ୍କର ଶିର ଧୌତ କରି ଶେଷ ତର୍ପଣ କଲେ ଓ ତାଙ୍କର ଅଗ୍ନିସଂସ୍କାର ପୂର୍ଣ୍ଣ କଲେ ।

ଯେଉଁଠାରେ ପିତାଙ୍କର ତର୍ପଣ ପାଇଁ ସେ ପାଞ୍ଚକୁଣ୍ଡ ରକ୍ତ ସଂଗ୍ରହ କରିଥିଲେ ସେ ସ୍ଥାନ ମହାଭାରତରେ ସମନ୍ତପଞ୍ଚକ ନାମରେ ଉଲ୍ଲେଖ କରାଯାଇଛି । ସେହି ସ୍ଥାନ ପରେ କୁରୁକ୍ଷେତ୍ର ଭାବରେ ପରିଚିତ ହେଲା । ପୁଣି ସେହି ସ୍ଥାନରେ ମହାଭାରତ ଯୁଦ୍ଧରେ ରକ୍ତ ନଦୀର ସୃଷ୍ଟି ହୋଇଥିଲା । ପିତାଙ୍କର ଶ୍ରାଦ୍ଧ କରିବା ପରେ ସେ ପୁଣି କ୍ଷତ୍ରିୟ ସଂହାର ପାଇଁ ବାହାରି ପଡ଼ିଲେ । କ୍ଷତ୍ରିୟ ନାରୀମାନେ ନିଜ ନିଜ ଶିଶୁଙ୍କୁ ବ୍ରାହ୍ମଣ ଘରମାନଙ୍କରେ ଲୁଚାଇ ଦେଉଥିଲେ । ପରେ ସେହି ଶିଶୁମାନେ ବଡ଼ ହୋଇ ପୁଣି ନିଜ ରାଜ୍ୟ ସବୁ ଶାସନ କଲେ । ପୁଣି ପରଶୁରାମ ଖୋଜି ଖୋଜି ସେମାନଙ୍କୁ ମାରିଲେ । ଏହିପରି ଏକୋଇଶବାର ପୃଥିବୀକୁ ସେ ନିକ୍ଷତ୍ରିୟ କଲେ ଓ ସବୁ ରାଜ୍ୟ କଶ୍ୟପଙ୍କୁ ଦାନ ଦେଇ ଦକ୍ଷିଣ ସାଗରସ୍ଥିତ ମହେନ୍ଦ୍ର ପର୍ବତକୁ ଯାଇ ତପସ୍ୟା କଲେ । କଶ୍ୟପ ବଞ୍ଚିରହିଥିବା କ୍ଷତ୍ରିୟ ଯୁବକ-ମାନଙ୍କୁ ସେମାନଙ୍କ ରାଜ୍ୟ ସମର୍ପଣ କଲେ ।

ରାଜା ଇକ୍ଷ୍ୱାକୁଙ୍କ ବଂଶରେ ରଘୁ ଥିଲେ ଜଣେ ବିଖ୍ୟାତ ରାଜା । ସେହି ରଘୁ ବଂଶରେ ଅନେକ ଦିନ ପରେ ଶ୍ରୀବିଷ୍ଣୁ, ରାଜା ଦଶରଥଙ୍କ ଜ୍ୟେଷ୍ଠପୁତ୍ର ରାମଚନ୍ଦ୍ରଙ୍କ ରୂପରେ ଜନ୍ମ ନେଲେ । ସେ ମନୁଷ୍ୟ ପାଇଁ ସବୁ ପ୍ରକାର ଆଦର୍ଶର ଉଦାହରଣ ରଖିଛନ୍ତି । ସେ ରାକ୍ଷସମାନଙ୍କୁ ସଂହାର କରିଥିଲେ ଓ ଆଦର୍ଶ ରାମରାଜ୍ୟ ସ୍ଥାପନ କରିଥିଲେ ।

### ରାମାବତାର

ହିରଣ୍ୟକଶିପୁ ଓ ହିରଣ୍ୟାକ୍ଷଙ୍କୁ ବିଷ୍ଣୁ ନରସିଂହ ରୂପରେ ମାରିଥିଲେ । ପର ଜନ୍ମରେ ସେମାନେ ରାବଣ ଓ କୁମ୍ଭକର୍ଣ୍ଣ ନାମରେ ଦୁଇ ଭୟଙ୍କର ରାକ୍ଷସ ଭାବରେ ଜନ୍ମ ନେଇ ଦେବତା, ଯକ୍ଷ, ଗନ୍ଧର୍ବ ଓ ଋଷିଗଣଙ୍କ ଉପରେ ଘୋର ଅତ୍ୟାଚାର କଲେ । ରାବଣ ଘୋର ତପସ୍ୟା କରି ବ୍ରହ୍ମାଙ୍କଠାରୁ ବର ପାଇଲା କି ଦେବତା, ଯକ୍ଷ ଓ ଗନ୍ଧର୍ବ ଆଦି କେହି ଯେପରି



ତାଙ୍କୁ ମାରି ପାରିବେ ନାହିଁ । ମନୁଷ୍ୟ ତ ତାହାର ଖାଦ୍ୟ ତେଣୁ ମନୁଷ୍ୟ କଥା ସେ ବର ମାଗିବା ବେଳେ ଭୁଲି ଯାଇଥିଲା ।

କୁମ୍ଭକର୍ଣ୍ଣର ଶରୀର ଥିଲା ବିରାଟ । ସେ ତପସ୍ୟା କରି ବର ପାଇଲା ଯେ ସେ ଛମାସ ଶୋଇବ ଓ ଛମାସ ଜାଗ୍ରତ ରହିବ । ଜାଗ୍ରତ ରହିବା ସମୟରେ ସେ ଅଜେୟ ।

ରାବଣ ତା'ର ବୈମାତୃକ ଭାଇ କୁବେରଙ୍କୁ ଲଙ୍କାପୁରୀରୁ ବିତାଡିତ କରି ଲଙ୍କା ଦଖଲ କଲା ଓ ନିଜ ବଂଶ ଧରି ସେହିଠାରେ ଗଡ଼ ବାନ୍ଧି ରହିଲା । ରାବଣର ଥିଲା ଦଶଶିର ଓ ବିଂଶ ବାହୁ । ସେ ଥିଲା ଅମିତ ପରାକ୍ରମଶାଳୀ । ଅନ୍ୟାନ୍ୟ ଅସୁରମାନଙ୍କୁ ସଂଗଠନ କରି ସେ ରାଜ୍ୟ ଜୟ କରିବାରେ ଲାଗିଲା । ଥରେ ଗର୍ବ ବଶରେ ସେ ଶିବଙ୍କ ଆସ୍ଥାନ ସହ କୈଳାସ ପର୍ବତକୁ ଉପାଡ଼ ଫୋପାଡି ଦେବାକୁ ଚେଷ୍ଟା କଲା । ଅଧା ଉପାଡିବା ଅବସ୍ଥାରେ ଶିବ ଇଚ୍ଛାକରି ବେଶି ଓଜନ ହୋଇଗଲେ ଓ ସେ ପର୍ବତ ତଳେ ଚୂପା ପଡ଼ି ଖୁବ୍ ଚିତ୍କାର କଲା । ତା'ପରେ ଶିବସ୍ତୋତ୍ର ବୋଲି ଶିବଙ୍କୁ ପ୍ରସନ୍ନ କରାଇଲା ଓ ନିଜର ନଅଟି ମୁଣ୍ଡ ଶିବଙ୍କ ନିକଟରେ ବଳି ଦେଲା । ଶିବ ଖୁସି ହେଲେ ତା'ର ଭକ୍ତି ଓ ତ୍ୟାଗରେ । ଶିବ ଭକ୍ତି ଯୋଗୁ ତା'ର ନଅଟି ମୁଣ୍ଡ ପୁଣି କଅଁଳିଲା ।

ସେ ବୀର ଓ ପରାକ୍ରମୀ ଥିଲେ ମଧ୍ୟ ରାକ୍ଷସ ସ୍ୱଭାବ ହେତୁ ଅତ୍ୟନ୍ତ କ୍ରୁର ଓ ଦୁଷ୍ଟବୁଦ୍ଧି ସମ୍ପନ୍ନ ଥିଲା । ପରନାରୀହରଣ ଥିଲା ତା'ର ଦୈନନ୍ଦିନ ବ୍ୟାପାର । ସେଥିପାଇଁ ସେ ଥରେ ଏକ ଅଭିଶାପ ପାଇଥିଲା ଯେ ସେ ଯଦି ବଳପୂର୍ବକ କୌଣସି ନାରୀ ଉପରେ ଅତ୍ୟାଚାର କରେ ତେବେ ତା'ର ଦଶଶିର ହେବ ଭୂଲୁଣ୍ଠିତ । ତା'ପରେ ସେ ଆଉ ସେ ସାହସ କରିନାହିଁ ।

ମୟ ଦାନବର ଝିଅ ମନ୍ଦୋଦରୀ ଥିଲା ତା'ର ଧର୍ମପତ୍ନୀ । ସେ ପ୍ରକୃତରେ ଥିଲା ଏକ ଧାର୍ମିକା ନାରୀ । ମନ୍ଦୋଦରୀ ଓ ରାବଣର ସାନଭାଇ ଧାର୍ମିକ ବିଭୀଷଣ ରାବଣକୁ ସର୍ବଦା ଧର୍ମ ମାର୍ଗରେ ଯିବା ପାଇଁ ଅନେକ ବୁଝାଉଥା'ନ୍ତି । କିନ୍ତୁ ସବୁ ବୃଥା ।

ବିନ୍ଧ୍ୟାଚଳର ଦକ୍ଷିଣଭାଗ ପର୍ଯ୍ୟନ୍ତ ତାହାର ରାଜ୍ୟ ବ୍ୟାପୀ ଥାଏ । ସେଠି ଥିବା ରାକ୍ଷସମାନେ ଆର୍ଯ୍ୟାବର୍ତ୍ତରେ ହେଉଥିବା ଯଜ୍ଞ ସବୁରେ ନାନା ବିଘ୍ନ ଘଟାଉଥା'ନ୍ତି । ସେଠାରେ ଥିବା ଋଷି-ମୁନିଙ୍କ ଉପରେ ଅତ୍ୟାଚାର କରୁଥା'ନ୍ତି । ଆଶ୍ରମ ଓ ଗ୍ରାମମାନଙ୍କୁ ପୋଡ଼ିବା, ନିରୀହ ଲୋକଙ୍କୁ କଷ୍ଟ ଦେବା ଓ ରାଜ୍ୟ ପରେ ରାଜ୍ୟ ଲୁଣ୍ଠନ କରିବାରେ ସେମାନଙ୍କର ଅପାର ଆନନ୍ଦ ।

ସେହି ସମୟରେ କୁଶଧ୍ୱଜ ନାମକ ଜଣେ ଋଷି ବେଦପାଠ କରି କରି ଗୋଟିଏ କନ୍ୟା ସନ୍ତାନ ଲାଭ କଲେ ଓ ତା'ର ନାମ ରଖିଲେ ବେଦବତୀ । ସେ ଥିଲେ ଅତି ସୁନ୍ଦରୀ ଓ ଲକ୍ଷ୍ମୀଙ୍କ କଳାରେ ଜନ୍ମ ନେଇଥିଲେ । ତେଣୁ ପ୍ରାପ୍ତ ବୟସ୍କ ହେବା ମାତ୍ରେ ସେ ଶ୍ରୀବିଷ୍ଣୁଙ୍କୁ ପତି ରୂପରେ ପାଇବା ପାଇଁ ତପସ୍ୟା କରୁଥା'ନ୍ତି । ରାବଣ ତାଙ୍କୁ ପାଇବା ପାଇଁ ଚାହିଁଲା । ତେଣୁ ଦିନେ ସେ ବେଦବତୀ ପାଖକୁ ଯାଇ କହିଲା, "ମୋତେ ପତି ରୂପରେ ବରଣ କରି ମୋ ସହିତ ଲଙ୍କା ଚାଲ ।" ବେଦବତୀ ଏ କଥା ଶୁଣି ରାବଣକୁ ତିରସ୍କାର ଓ ଅପମାନ କରନ୍ତେ ରାବଣ କ୍ରୋଧବଶରେ ତାଙ୍କର କେଶ ଧରି ଟାଣିଲା । ଏପରି ଦୁର୍ବ୍ୟବହାରରେ ବେଦବତୀ ଭୟଙ୍କର ଭାବରେ ରାଗିଯାଇ ରାବଣକୁ ଶାପ ଦେଲେ, "ଆରେ ଦୁଷ୍ଟ, ତୁ ମୋର ଶରୀର ସ୍ପର୍ଶ କରି ଅପବିତ୍ର କଲୁ । ତେଣୁ ମୁଁ ଏ ଦେହକୁ ଏବେ ପରିତ୍ୟାଗ କରିବି । କିନ୍ତୁ ମନେ ରଖ । ପରଜନ୍ମରେ ମୋରି ଯୋଗୁ ତୋର ବିନାଶ ହେବ । ଭଗବାନ ବିଷ୍ଣୁ ରାମ ଅବତାର ହୋଇ ମୋତେ ସ୍ତ୍ରୀ ରୂପରେ ବରଣ କରିବେ ।" ଏକଥା କହି ସେ ଯୋଗବଳରେ ଅଗ୍ନିରେ ପ୍ରବେଶ କଲେ ।

ରାକ୍ଷସମାନଙ୍କ ଅତ୍ୟାଚାରରେ ପୃଥିବୀ ତାହି ତାହି କରି ଉଠିଲା । ସଂସାରର କଲ୍ୟାଣ ପାଇଁ ଶ୍ରୀବିଷ୍ଣୁ ମନୁଷ୍ୟ ରୂପରେ ଓ ଦେବତାମାନେ ବାନର ରୂପରେ ପୃଥିବୀରେ ଜନ୍ମ ନେଲେ ।

(କ୍ରମଶଃ)





# ରକ୍ଷାକବଚ

ଶରତ୍ ପୂର୍ଣ୍ଣିମା ରାତିରେ ଚତୁର୍ଦ୍ଦିଗ ଜ୍ୟୋତ୍ସ୍ନାଲୋକରେ ପୂରି ରହିଛି। ରାଜା ସୁଗୁଣ ସିଂହ ନବରର ଛାତ ଉପରେ ଏକା ଏକା ଟହଲ ମାରୁଛନ୍ତି, ସେ ଭାବୁଥିଲେ, "ସୁଳନ୍ଦ ରାଜ୍ୟରେ ମୁଁ ଚାଳିଶ ବର୍ଷ ଧରି ଶାସନ କରି ଆସୁଛି। ପ୍ରଜାମାନେ ସୁଖୀ ଓ ମୋତେ କେତେ ଭଲ ପାଉଛନ୍ତି। କୌଣସି ଅନ୍ୟାୟ, ଅପରାଧ ପ୍ରାୟଶଃ ହୁଏନାହିଁ। ଈଶ୍ୱରଙ୍କ କୃପାରୁ ଏସବୁ ସମ୍ଭବ ହୋଇଛି ସିନା। ଠିକ୍ ଏଇ ଜ୍ୟୋତ୍ସ୍ନାରାତି ପରି ମୋର ଯଶବାନା ସବୁଦିନେ ଆଲୋକିତ ହୋଇ ରହିଥିବ।"

ସେ ଆକାଶକୁ ଚାହିଁ ଦେଖିଲେ ଅଚାନକ ଗୋଟାଏ ବାଦଲ ଚନ୍ଦ୍ର ଉପରକୁ ମାଡ଼ି ଆସୁଛି। ତାଙ୍କର ମନଟା ଶିହରି ଉଠିଲା; ଭାବିଲେ, "ମୃତ୍ୟୁ ଉପରେ କୌଣସି ବିଶ୍ୱାସ ରଖାଯାଇ ପାରେନା। ବରଂ ପୁତ୍ର ହାତରେ ରାଜ୍ୟଭାର ସମର୍ପଣ କରି ଶେଷ ଜୀବନ ଭଗବାନଙ୍କ ଧ୍ୟାନ ଭଜନରେ ବିତାଇ ଦେଲେ ଭଲ। ମନ, ପ୍ରାଣ, ଶରୀର ଏବେ କ୍ରମେ ବଳହୀନ ହୋଇ ପଡୁଛି। କିଏ ଜାଣେ କିଛି ଗୋଟାଏ ହୁଏତ ଭୁଲ କାମ କରି ବସିବି ଓ ବଦନାମହିଁ ସାର ହେବ। ଏତେ ଦିନର ଯଶ ଅପଯଶରେହିଁ ପରିଣତ ହେବ।"

ରାତି କ୍ରମେ ଗଭୀର ହେଉଥାଏ। ରାଜା ଏହିପରି ଭାବି ଭାବି ଶୋଇବା ପାଇଁ ନିଜର ଶୟନକକ୍ଷ ଖୋଲିଦେବା ମାତ୍ରେ ଦେଖିଲେ କକ୍ଷଟିର ଭିତରଟା ଖୁବ୍ ଆଲୋକିତ ଦେଖା ଯାଉଛି। ନିଜ ପଲଙ୍କ ଉପରେ ଦୃଷ୍ଟି ପଡ଼ିବା କ୍ଷଣି ସେ ଆଶ୍ଚର୍ଯ୍ୟ ହୋଇଗଲେ। ସେହି ପଲଙ୍କ ଉପରେ ବସିଥିଲେ ଏକ ଦିବ୍ୟମୂର୍ତ୍ତି। ସେ ଅଳ୍ପ ଅଳ୍ପ ହସୁଥିଲେ। ସେ ରାଜାଙ୍କୁ ଆଶ୍ଚର୍ଯ୍ୟ ହେବାର ଦେଖି କହିଲେ,

ପଚିଶ ବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ



"ରାଜନ୍, କ'ଣ ମୋତେ ଆପଣ ଚିହ୍ନି ପାରୁନାହାନ୍ତି ? ମୋ ନାମ ହେଉଛି ଯଶଦେବୀ; ଜାଣନ୍ତି ଆପଣଙ୍କୁ ଧର୍ମପଥରେ କିଏ ଚଳାଉଛି ? ଆପଣଙ୍କର ଯଶ କାହାଯୋଗୁ ଗୃହଆଡ଼େ ବ୍ୟାପୀ ରହିଛି ? ସବୁ ମୁହିଁ କରିଛି ।"

ରାଜା ଏକଥା ଶୁଣି ଖୁସି ହେଲେ ଓ କହିଲେ, "ଦେବୀ, ଆପଣଙ୍କ କୃପା ଯୋଗୁ ମୋର ଧର୍ମ ଓ ଯଶ ଲାଭ ହୋଇଛି ସେଥିପାଇଁ କୃତଜ୍ଞତା ଜଣାଉଛି । କିନ୍ତୁ ଏବେ ଚିନ୍ତାର ବିଷୟ ହେଉଛି ମୋ ପରେ ମୋ ପୁତ୍ରର ଶାସନ କାଳରେ ଧର୍ମର ଦଶା କ'ଣ ହେବ ।"

"ରାଜନ୍, ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ଯେପରି ମୁଁ ଆପଣଙ୍କୁ ସତ୍‌ମାର୍ଗରେ ନେଇଥିଲି ସେହିପରି ଆପଣଙ୍କ ପୁତ୍ରକୁ ମଧ୍ୟ ଧର୍ମମାର୍ଗରେ ନେଇଯିବି ।" ଏପରି କହି ଦେବୀ ଅଦୃଶ୍ୟ ହୋଇଗଲେ ।

କିଛିଦିନ ପରେ ରାଜା ସୁଗୁଣ ସିଂହ ଦେହ ତ୍ୟାଗ କଲେ ଓ ତାଙ୍କ ଜ୍ୟେଷ୍ଠପୁତ୍ର ଶୀଳ ସିଂହ ଗାଦିରେ ବସିଲେ । ସେ ପିତାଙ୍କ ସମୟର ବୃଦ୍ଧ ମନ୍ତ୍ରୀ ଧର୍ମପାଳଙ୍କୁ ପ୍ରଧାନମନ୍ତ୍ରୀ ପଦରେ ରଖିଲେ । ସେ ପିତାଙ୍କର ସମସ୍ତ ଶାସନ ନୀତି ଅନୁସରଣ କରୁଥିଲେ । ତେଣୁ ସମସ୍ତେ ତାଙ୍କର ପ୍ରଶଂସା କରି କହୁଥିଲେ କି ପ୍ରକୃତରେ ସେ ଯୋଗ୍ୟ ପିତାର ଯୋଗ୍ୟ ପୁତ୍ର ।

କେତେ ବର୍ଷ ପରେ । ସେହିପରି ଆଉ ଏକ ଶରତ୍ ପୂର୍ଣ୍ଣିମା ରାତିରେ ଶୀଳ ସିଂହଙ୍କ କକ୍ଷରେ ଯଶୋଦେବୀ ଆବିର୍ଭୂତା ହେଲେ । ଶୀଳ ସିଂହ ତାଙ୍କୁ ଭକ୍ତିଭାବରେ ପ୍ରଣାମ କଲେ ଓ ନିଜର କୃତଜ୍ଞତା ଜଣାଇଲେ । ଯଶୋଦେବୀ ସଙ୍ଗେ ସଙ୍ଗେ ଶୀଳ ସିଂହଙ୍କୁ ଗୋଟିଏ ମୁଦି ଦେଇ କହିଲେ, "ଏଇଟି ହେଲା ତୁମର ରକ୍ଷାକବଚ । ଯେତେବେଳେ ତମର ନ୍ୟାୟ ଓ ଧର୍ମ ପଥରୁ ବିଚ୍ୟୁତି ଘଟିବ ସେତେବେଳେ ତମେ ଏ ମୁଦି ଭିତରୁ ଏକ ଗୁପ ଅନୁଭବ କରିବ ଏହାକୁ ଚେତାବନୀ ବୋଲି ଧରି ତୁମେ ନିଜର ଭୁଲ୍‌କୁ ସଂଶୋଧନ କରିନେବ । ନଚେତ୍ ସର୍ବନାଶ ହେବ ।" ଏକଥା କହି ଯଶୋଦେବୀ ଅଦୃଶ୍ୟ ହୋଇଗଲେ ।



ଶୀଳ ସିଂହ ଯଶୋଦେବୀଙ୍କର କୃପାକୁ ନିଜର ସୌଭାଗ୍ୟ ବୋଲି ମନେ କଲେ ଓ ରକ୍ଷାକବଚକୁ ଯତ୍ନର ସହିତ ପିନ୍ଧିଲେ ।

ଅଭିଜ୍ଞ ପ୍ରଧାନମନ୍ତ୍ରୀଙ୍କର ସାହାଯ୍ୟ ଓ ରକ୍ଷାକବଚର ପ୍ରଭାବ ଯୋଗୁ ରାଜ୍ୟ ଧର୍ମପଥରେ ଚାଲିଥାଏ । କିନ୍ତୁ ବେଳେ ବେଳେ ସେ ଭାବନ୍ତି, "ରାଜ୍ୟ ବିସ୍ତାର ଦ୍ୱାରା ରାଜାର ଯଶ ବଢ଼ିଥାଏ । ମୁଁ ମୋ ପିତାଙ୍କ ଅପେକ୍ଷା ବଡ଼ ରାଜା ବୋଲି ସମସ୍ତେ ଜାଣିବେ ।"

ଧୀରେ ଧୀରେ ଏଇ ଇଚ୍ଛା ତାଙ୍କ ମନ ମଧ୍ୟରେ ବଳବତୀ ହେବାକୁ ଲାଗିଲା । ପ୍ରଧାନମନ୍ତ୍ରୀଙ୍କର କଥା ତାଙ୍କୁ ବେଶି ପସନ୍ଦ ହେଲାନାହିଁ । ତାଙ୍କ ପାଖରେ ଥିବା କେତେକ ଅବିବେକୀ ଲୋକ ତାଙ୍କର ଏ ଇଚ୍ଛାକୁ ଆହୁରି ବଢ଼ାଇବାରେ ସାହାଯ୍ୟ କଲେ ।

ସେଇ ସବୁ କୁଚକ୍ରୀ ଲୋକଙ୍କର ନେତା ଥିଲା ସେନାପତି ଦୁନ୍ଦୁଭି । ସେ ହେଲେ ରାଜାଙ୍କର ଅତି ପ୍ରିୟ । ରାଜା ପ୍ରଧାନମନ୍ତ୍ରୀଙ୍କ କଥାକୁ ମୂଲ୍ୟ ନ ଦେଇ ସର୍ବଦା ଦୁନ୍ଦୁଭି କଥାରେ ପରିଚାଳିତ ହେଲେ । ଦିନେ ଅଚାନକ ସେ ଏକ ପଡ଼ୋଶୀ ରାଜ୍ୟ ଉପରେ ଆକ୍ରମଣ କଲେ । ଯଦିଓ ରକ୍ଷାକବଚ ମୁଦ୍ରିକାଟି ତାଙ୍କ ଅଙ୍ଗୁଳିକୁ ବରାବର ଚାପ ଦେଉଥିଲା ରାଜାଙ୍କର ସେକଥା ବୁଝିବାକୁ ସମୟ ନଥିଲା ।

ଶୀଳ ସିଂହଙ୍କର ଅଧର୍ମ ବଢ଼ିବାକୁ ଲାଗିଲା । ତାଙ୍କର ଯୁଦ୍ଧ ପାଇଁ ଇଚ୍ଛା ମଧ୍ୟ ବଢ଼ିବାକୁ ଲାଗିଲା । ଛୋଟ ଛୋଟ ରାଜ୍ୟ ଉପରେ ଆକ୍ରମଣ କରୁଥା'ନ୍ତି । ଯୁଦ୍ଧ ପାଇଁ ରାଜ୍ୟର ସମସ୍ତ ଆୟ ଖର୍ଚ୍ଚ ହୋଇଯାଉଥାଏ । ତେଣୁ ବାଧ୍ୟ ହୋଇ କର ଓ ଖଜଣା ବୃଦ୍ଧି କଲେ ।

ଖଜଣା ଅସୁଲ କରିବାକୁ ଯାଇ ପ୍ରଜାପୀଡ଼ନ କରାଗଲା; ପ୍ରଜାମାନେ ରାଜାଙ୍କର ନିନ୍ଦା କରିବାକୁ ଲାଗିଲେ । ବାରମ୍ବାର ଯୁଦ୍ଧ କରି ସୈନ୍ୟମାନେ ବିଦ୍ରୋହ କଲେ । ପିତାଙ୍କ ରାଜ୍ୟର ଯଶପତାକାର ପତନ ଶୀଳ ସିଂହଙ୍କ ଯୋଗୁ ହେଲା ।

ରାଜ୍ୟର ଏପରି ଅବସ୍ଥା ଦେଖି ପ୍ରଧାନମନ୍ତ୍ରୀ ଖୁବ୍ ଚିନ୍ତିତ ହୋଇ ପଡ଼ିଲେ ଓ କିଛିଦିନ ମଧ୍ୟରେ ତାଙ୍କର ମୃତ୍ୟୁ ହେଲା । ତା'ପରେ

ରାଜ୍ୟର ଅବସ୍ଥା ଆହୁରି ଖରାପ ହେଲା । ଦୁନ୍ଦୁଭି ତା'ର ସାଙ୍ଗସାଥୀମାନଙ୍କୁ ନେଇ ରାଜ୍ୟ ଲୁଟ କରିବାକୁ ଲାଗିଲା । ଅବସ୍ଥା ଯେତେବେଳେ ଅତ୍ୟନ୍ତ ଗୁରୁତର ହେଲା ଶୀଳ ସିଂହ କ୍ରମେ ଉପଲବ୍ଧି କଲେ କି ନିଜର ଭୁଲ ଯୋଗୁ ଏସବୁ ସମ୍ଭବ ହୋଇଛି । ସେ ପଶ୍ଚାତ୍ତାପ କରି କହିଲେ, "ହାୟ, ମୁଁ ଦୁନ୍ଦୁଭି କଥାରେ ପଡ଼ି ନିଜ ପଡ଼ୋଶୀ ରାଜ୍ୟମାନଙ୍କ ସହିତ ଯୁଦ୍ଧ କଲି । ମୋର ଅବହେଳା ଯୋଗୁହିଁ ପ୍ରଧାନମନ୍ତ୍ରୀ ମରିଗଲେ । ଆଉ ମୁଁ କେତେଦୂର ଅଧର୍ମରେ ଥିଲି ଯେ ମୃଦାଟିର ରୂପକୁ ମଧ୍ୟ ଧ୍ୟାନ ଦେଲିନାହିଁ ।"

ହଠାତ୍ ହନେ ନବର ଭିତରେ କୋଳାହଳ ଶୁଭିଲା । ଚାରିଆଡ଼େ ଆତଙ୍କର ଛାୟା ଘୋଟିଗଲା । ଲାଗିଲା ଯେପରି ସମସ୍ତଙ୍କ ଜୀବନ ବିପନ୍ନ ଓ ଘୋର ଅରାଜକତା ଦେଖାଦେଲା ।

ଶୀଳ ସିଂହ ପଶ୍ଚାତ୍ତାପ କରିବା ବେଳେ ମୃଦା ଆହୁରି ତାଙ୍କୁ ରୂପ ଦେଉଥିଲା । ତାଙ୍କ ମନରେ ଆସିଲା ନୂଆ ଶକ୍ତି । ସେ ଅନୁଭବ କଲେ ଯେପରି ଗଭୀର ନିଦରୁ ସେ ଉଠିଛନ୍ତି ।

ଦୂରରୁ କୋଳାହଳ ଶୁଣି ବାହାରକୁ ଆସି ସେ ଶୁଣିଲେ ଷଡ଼ଯନ୍ତ୍ରକାରୀମାନେ ତାଙ୍କ ଏକମାତ୍ର କନ୍ୟାଟିକୁ ଧରିନେଇ ଯାଉଛନ୍ତି ଓ ତାଙ୍କୁ ମଧ୍ୟ ମାରିବାକୁ ଆସୁଛନ୍ତି । ଏକଥା ଶୁଣି ସେ ରାଗି ଉଠିଲେ । ତାଙ୍କ ମନରେ ଓ ଶରୀରରେ ଆସିଲା ଶତସିଂହର ବଳ । ସେ ବିଶ୍ୱସ୍ତ କେତେକ ସୈନିକଙ୍କୁ ନେଇ ବିଦ୍ରୋହ ଦମନ କରିବାକୁ ତତ୍କ୍ଷଣାତ୍ ବାହାରି ପଡ଼ିଲେ । ଅତ୍ୟନ୍ତ ଅଳ୍ପ ସମୟ ମଧ୍ୟରେ ସେ ଅବସ୍ଥାକୁ ଆୟତ୍ତକୁ ଆଣି ପାରିଲେ ।

ସେ ପ୍ରଜାମାନଙ୍କ ଆଗରେ ନିଜର ଭୁଲ ସ୍ୱୀକାର କଲେ ଓ ଶପଥ କଲେ ଆଉ କେବେ ଯେପରି ଏଭଳି ଭୁଲ ନହୁଏ । ପ୍ରଜାମାନେ ଆନନ୍ଦିତ ହେଲେ । ପତନ ହୋଇଥିବା ଯଶପତାକା ପୁଣି ଊର୍ଦ୍ଧ୍ୱକୁ ଉଡ଼ିଲା । ସେ ଧର୍ମ ଓ ନ୍ୟାୟକୁ ଆଶ୍ରା କରି ରାଜ୍ୟ ଶାସନ କଲେ ।



# ଭୁଲ୍ ରାସ୍ତା

ଚନ୍ଦ୍ରଶେଖର ଥିଲେ ଜଣେ ଗ୍ରାମମୁଖ୍ୟ । ସେତେବେଳେ ଉତ୍ତରାଧିକାରୀ ସୂତ୍ରରେ ଏ ପଦ ମିଳୁଥିଲା ।

ଚନ୍ଦ୍ରଶେଖରଙ୍କର ଦୁଇ ପୁଅ ଥିଲେ । ଦୁହେଁ ଅତ୍ୟନ୍ତ ଭଲ ସ୍ୱଭାବର ତରୁଣ । ଚନ୍ଦ୍ରଶେଖର କାହାକୁ ନିଜ ପଦ ଦେଇଯିବେ, ଠଉରାଇ ପାରୁ ନଥିଲେ ।

ଦିନେ ସେ ତାଙ୍କର ଜଣେ ବନ୍ଧୁଙ୍କ ସହ ଏ ବିଷୟରେ ପରାମର୍ଶ କରୁଛନ୍ତି, ବଡ଼ପୁଅ ଆସି କହିଲା, "ବାପା, ମୁଁ ମୋ ମିତ୍ର ରବି ସହ ମେଳା ଦେଖିବାକୁ ଯାଉଛି !"

"ତୋ ସାନଭାଇ ଯାଉ ନାହିଁ ?" ଚନ୍ଦ୍ରଶେଖର ପଚାରିଲେ ।

"ହଁ, କିନ୍ତୁ ସେ ରାଜପଥ ଦେଇ ଯାଉଛି । ମୁଁ ରବି ସହ ବଣ ରାସ୍ତାରେ ଯାଉଛି । ଏ ରାସ୍ତା ସିଧା ହେଲେ ବି ଦୁର୍ଗମ । କିନ୍ତୁ ରବି ଜଗର କରୁଛି ବଣ ରାସ୍ତାରେ ଯିବା ପାଇଁ !" ବଡ଼ ପୁଅ, କହିଲା ।

"ଆଚ୍ଛା ଯାଅ ।" ଚନ୍ଦ୍ରଶେଖର କହିଲା ।

ପୁଅ ଚାଲିଯିବା ପରେ ବନ୍ଧୁ କହିଲେ, "ଚନ୍ଦ୍ରଶେଖର ! ଯିଏ ମିତ୍ର କଥା ଭାଙ୍ଗି ନ ପାରି ଭୁଲ ବାଟରେ ଯାଉଛି, ସିଏ ଗ୍ରାମମୁଖ୍ୟ ହେବା ଉଚିତ ନୁହେଁ । ସାନ ପୁଅକୁ ପଦଟି ଦିଅ ।"



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଡିସେମ୍ବର ୧୯୮୩ ସଂଖ୍ୟାରେ ପ୍ରକାଶ ପାଇବ



M. K. Rao



M. Natarajan

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଅକ୍ଟୋବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

**ଅଗଷ୍ଟ ପ୍ରତିଯୋଗିତାର ଫଳ**

ପ୍ରଥମ ଚିତ୍ର : ଶକ୍ତି ସାହସର ଚିହ୍ନ ଏହି ହାତ ମୋର !

ଦ୍ୱିତୀୟ ଚିତ୍ର : ଏ ହାତେ ଭରିଛି ପୁଣି ସ୍ନେହ ଓ ଆଦର !!

ପୁରସ୍କାର ବିଜୟିନୀ : ସ୍ୱାଗତିକା ଦାଶ, ବାରିପଦା ।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

## ପ୍ରଶ୍ନମାଳାର ଉତ୍ତର

୧. କଲିକତା । ୨. ରୋମ; ଏହା ସାତ ପର୍ବତ ଉପରେ ଅବସ୍ଥିତ । ୩. ସାନ୍‌ଫ୍ରାନ୍‌ସିସ୍କୋ (ଅମେରିକା) । ୪. କୋଲେନ୍-ମାଗିର ଶ୍ମଶାନ ଉଦ୍ୟାନ । ୫. ମଣ୍ଟ୍ରିଲ୍ (କାନାଡା); ଏଠାର ସବୁ ରାସ୍ତା ସାଧୁଙ୍କ ନାମରେ ନାମିତ । ୬. ଇଟାଲିର ସାଜଆ ନଗରୀ; କାରଣ ସହରଟି ଶିଖରମାଳାରେ ଭରି ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

# ଜହ୍ନ ମାମୁଁ

* ଆଗାମୀ ସଂଖ୍ୟା *

## ଦୀପାବଳି ବିଶେଷାଙ୍କ

★ ପୃଷ୍ଠା ସଂଖ୍ୟା ଅଧିକ—

★ ଅନେକ ମନୋହର କାହାଣୀର ସମାହାର—

★ ବହୁରଙ୍ଗର ଚିତ୍ର ସମ୍ବଳିତ

★ ଏହି ପ୍ରାଣୋଚ୍ଛଳ ସଂଖ୍ୟା ପାଇବା ନିମନ୍ତେ
ବେଳ ଥାଉଁ ଥାଉଁ ବ୍ୟବସ୍ଥା କରନ୍ତୁ ।

**ମୂଲ୍ୟ : ୨-୫୦**



# ମାଲ୍ଟୋଭା ଦଳ –
# ସବୁବେଳେ ହୁମଦୁମ, କଷ୍ଟ ଯେ କରିବେ କିଏ ଜାଣେ!



ଯେଉଁ ପିଲାମାନେ ମାଲଟୋଭା ଖାନ୍ତି, ସ୍କୁଲରେ, ଖେଳରେ ସବୁବେଳେ ସେମାନେ ପ୍ରାଣୋଚ୍ଛଳ ହୋଇ ରହନ୍ତି । କାରଣ ମାଲଟୋଭାରେ ସମସ୍ତ ଉତ୍ତମଗୁଣ ପରିପୂର୍ଣ୍ଣ ହୋଇ ରହିଛି ! ମାଲଟୋଭା ପିଲାମାନଙ୍କର ଏ ସବୁ ଉପକାର କରିଥାଏ । ତାଛଡ଼ା ଦୁଧରେ ମିଶେଇଲେ ଏହା ଏକ ଚମତ୍କାର ପାନୀୟ ହୁଏ ।

### ସ୍ୱାଭାବିକ ଭାବେ ପାଚିଥିବା ଗହମ ଓ ବାର୍ଲିର ମଲ୍ଟ

ପଂଜାବରୁ ଆସେ ଗହମ ଓ ବାର୍ଲି ଓ ତାହା ପୁଷ୍ଟିକର ମଲ୍ଟ ଭାବେ ତିଆରି କରାଯାଏ ମାଲଟୋଭା ପ୍ଲାଣ୍ଟରେ । ଅତ୍ୟାବଶ୍ୟକ ଖଣିଜସାର ଓ ଭିଟାମିନ 'B'ରେ ପରିପୂର୍ଣ୍ଣ ମାଲଟୋଭା ହେଉଛି ପୂର୍ବରୁ ସୁପାଚ୍ୟ-ଖାଦ୍ୟ ଓ ଏହା ସହଜରେ ଶରୀରରେ ମିଶିଯାଏ ।



### ବିଶୁଦ୍ଧ, ଘନ ଦୁଗ୍ଧ

ମାଲଟୋଭାରେ ଯେଉଁ ଦୁଗ୍ଧାଂଶ ଅଛି ତା ଆସେ ଆମର ନିଜର ଦୁଗ୍ଧ ସଂଗ୍ରହ କେନ୍ଦ୍ରମାନଙ୍କରୁ । ୧୦୦% ବିଶୁଦ୍ଧ, ୧୦୦% ପୁଷ୍ଟିକର ।

### ରୁଚିକର କୋକୋ ସ୍ୱାଦ

ଆମେ ବ୍ୟବହାର କରୁ ବିଦେଶରୁ ଆମଦାନି ଉତ୍କୃଷ୍ଟ କୋକୋ-ସାର କାରଣ ଆମେ ଚାହୁଁ ଆପଣ ଉତ୍ତମ ସ୍ୱାଦ ପାନ୍ତୁ ଓ ଆପଣଙ୍କୁ ପୁଷ୍ଟିକର ଗୁଣ ମିଳୁ । କୋକୋ ହୃତଶକ୍ତି ଫେରାଇଆଣେ ଓ କ୍ଲାନ୍ତି ମେଣ୍ଟାଇବାରେ ସାହାଯ୍ୟ କରେ ।



### ଶକ୍ତିବର୍ଦ୍ଧକ ଚିନି

ବିଶୁଦ୍ଧ ଧଳା ଚିନି ହେଉଛି ଚିନି ଭିତରେ ଶ୍ରେଷ୍ଠ ଚିନି। ପିଲାମାନଙ୍କର ଆବଶ୍ୟକ ହେଉଥିବା ଅତିରିକ୍ତ ଶକ୍ତି ପାଇଁ ଏହା ଅତି ପ୍ରୟୋଜନ ।

### ବିଶେଷଭାବେ ଭିଟାମିନରେ ସମୃଦ୍ଧ

ମାଲଟୋଭା ହେଉଛି ପ୍ରୋଟିନ, କାର୍ବୋହାଇଡ୍ରେଟ, ଭିଟାମିନ ଓ ଖଣିଜସାରର ଏକ ଅପୂର୍ବ ସମ୍ମିଶ୍ରଣ । ଅତିରିକ୍ତଭାବେ ଭିଟାମିନ A, ନିଆସିନ, ଭିଟାମିନ $B_1$ ଓ ଭିଟାମିନ $D_2$ ରେ ମଧ୍ୟ ଏହାକୁ ସମୃଦ୍ଧ କରାଯାଇଛି । ଏଥିରେ କୃତ୍ରିମ ସ୍ୱାଦ ନାହିଁ ।






JiL ଜଗତଜିତ ଇଣ୍ଡଷ୍ଟ୍ରୀଜ ଲିମିଟେଡ

୧୯୮୧ ଓ ୧୯୮୨ ରେ ମୋଣ୍ଡେ (ବ୍ରୁସେଲ୍ସ) ସିଲେକସନ୍ ସ୍ୱର୍ଣ୍ଣପଦକ ବିଜେତା

**ଭିଟାମିନରେ ଭରପୁର ମାଲ୍ଟୋଭା: ସ୍ୱାସ୍ଥ୍ୟ, ବଳ ଓ ଶକ୍ତିଦାୟକ**

## ହାତ ଖର୍ଚ୍ଚ ଟଙ୍କା
## **ଇଉକୋବ୍ୟାଙ୍କରେ**
## ଜମେଇ ମୁଁ ଏଇ
## ସାଇକେଲ୍‌ଟି କିଣିଚି

ସାଙ୍ଗମାନଙ୍କ ଠାରୁ ଧାର କରି ସାଇକେଲ ନୁହଁ, ଏଇଟା ମୋର ନିଜର ।

ସାଇକେଲ କିଣିବା ପାଇଁ ମୁଁ ଜେତେବେଳେ ଟଙ୍କା ଜମେଇବା ଆରମ୍ଭ କଲି,

ବାପା କହିଲେ ଇଉକୋବ୍ୟାଙ୍କରେ ଟଙ୍କା ଜମାଅ—ଟଙ୍କା ଶୀଘ୍ର ବଢ଼ିବ । ସେଠି ଜମେଇଲେ ସେମାନେ ଆଉ ଗୋଟିଏ ଜିନିଷ ଦିଅନ୍ତି ସେଇଟା ହେଉଛି 'ସୁଧ' !

ସେଇଥି ପାଇଁ ଟଙ୍କା ଘରେ ଜମେଇବା ଅପେକ୍ଷା ଇଉକୋବ୍ୟାଙ୍କରେ ଜମେଇଲେ ଲାଭ ବେଶି ।

ଦେଖନ୍ତୁ ନା, ବର୍ତ୍ତମାନ ମୁଁ ମୋର ନିଜର ସାଇକେଲ ଚଢ଼ୁଚି ।



**ୟୁନାଇଟେଡ**
**କମର୍ସିୟାଲ ବ୍ୟାଙ୍କ**
**ଇଉକୋବ୍ୟାଙ୍କ ନିକଟରେହିଁ ଅଛି.**
**ଇଉକୋବ୍ୟାଙ୍କରେ ଟଙ୍କା ଜମାନ୍ତୁ**

UCO/CAS-108/82 ORI

# ରାମ ଓ ଶ୍ୟାମ

## ଲକି ନମ୍ବର- 50
























ରୂପେଲି ଗାର ଦେଖି ନିଅନ୍ତୁ
ନକଲକାରୀମାନେ ଆଉ ଠକି ପାରିବେ ନାହିଁ।

everest/83/PP/40-or